# କ୍ଷୀରଚୋରା ମାହାତ୍ମ୍ୟ

- ରାମଚନ୍ଦ୍ର ମାଝୀ



# କ୍ଷୀରଚୋରା ମାହାତ୍ମ୍ୟ
# ଓ
# ଭଜନମାଳା



ଗୀତ ରଚନା ଓ ସଂପାଦନା :

ରାମଚନ୍ଦ୍ର ମାଝୀ

ପ୍ରାପ୍ତିସ୍ଥାନ:

ସଦ୍‌ଗ୍ରନ୍ଥ ନିକେତନ

କ୍ଷୀରଚୋରା ମନ୍ଦିର, ରେମୁଣା, ବାଲେଶ୍ୱର

# କ୍ଷୀରଚୋରା ମାହାତ୍ମ୍ୟ ଓ ଭଜନମାଳା

ଗୀତ ରଚନା ଓ ସଂପାଦନା :

ରାମଚନ୍ଦ୍ର ମାଝୀ

•

ପ୍ରକାଶିକା :

ଗାୟତ୍ରୀ ବେହେରା

ରେମୁଣା, ବାଲେଶ୍ୱର

•

ପ୍ରାପ୍ତିସ୍ଥାନ:

ସଦ୍‌ଗ୍ରନ୍ଥ ନିକେତନ

କ୍ଷୀରଚୋରା ମନ୍ଦିର,ରେମୁଣା, ବାଲେଶ୍ୱର

•

ଅଳଙ୍କରଣ :

ସିତୁ

•

ଷଷ୍ଠ ସଂସ୍କରଣ : ଦୋଳପୂର୍ଣ୍ଣିମା ୨୦୧୪

•

ଅକ୍ଷର ଓ ମୁଦ୍ରଣ :

ସହଯୋଗ ପ୍ରିଣ୍ଟର୍ସ

ଭାସ୍କରଗଂଜ(ହେଡ୍‌ପୋଷ୍ଟ ଅଫିସ୍ ପଛ),ବାଲେଶ୍ୱର

ମୂଲ୍ୟ : ଟ୩୫.୦୦ଙ୍କା (ପଇଁତିରିଶ ଟଙ୍କା) ମାତ୍ର

# ଉତ୍ସର୍ଗ

ତୁମରି ଇଚ୍ଛାରେ ପ୍ରଭୁ ତୁମରି ସନ୍ତାନ
ତବ ଲୀଳା ଭକ୍ତିରସ କରେ ଆସ୍ୱାଦନ
ତୁମେ ଏ ଛାର ଭକତ ଅଜ୍ଞାନ
ମାନସରୁ ସୃଷ୍ଟି ସୃଜନୀ କଣିକା
ପାଦ ପଙ୍କଜରେ ତବ କରୁଛି ଅର୍ପଣ ॥

- ଚରଣାଶ୍ରିତ
**ରାମଚନ୍ଦ୍ର ମାଝୀ**



# ସୂଚୀପତ୍ର



●●●

# ଶ୍ରୀ ଶ୍ରୀ ଗୋପୀନାଥାଷ୍ଟକମ୍

ଚିଦାନନ୍ଦାକାରଂ ବ୍ରଜବନ ବିହାରଂ ସୁଖକରଂ
ନିରାଲମ୍ବାଧାରଂ ଭବ ଜଳଧିପାରଂ ନଗଧରମ୍
ରମେଶଂ ଦେବେଶଂ ହର କମଳ ଜେଶଂ ଜନହରଂ
ସଦା ଗୋପୀନାଥଂ ପରମ ସୁଖଦଂ ତୋ ଭଜତରେ ॥

ରମା ଗ୍ରୀବାହାରଂ ଭବଭୟ ବିଦାରଂ ମଳହରଂ
ନିୟନ୍ତାରଂ ଶୂରଂ ଶ୍ରୁତି ସୁରସ ସାରଂ ଗୁଣବରମ୍
ପରେଶଂ ନାଗେଶଂ ତନୁ କୁଟୀଳ କେଶଂ ନଟବରମ୍
ସଦା ଗୋପୀନାଥ ପରମ ସୁଖଦଂ ତଂ ଭଜତରେ ॥

ସୁଶାନ୍ତଂ ନିର୍ଦ୍ଦାନ୍ତଂ ନବଜଳଦକାନ୍ତଂ ଚ ଶିବଦଂ
ଦୁରାଶାନ୍ତଂ ଶାନ୍ତଂ ନିଖିଳ ଜନଭାନ୍ତଂ ସୁରବରମ୍
ଅବିଦ୍ୟାନ୍ତଂ କାନ୍ତିଂ ଦିତିସୁତ ଚୟାନ୍ତଂ ବିଧିପରଂ
ସଦା ଗୋପୀନାଥଂ ପରମ ସୁଖଦଂ ତଂ ଭଜତରେ ॥

ଜଗତ୍ୟା ଆଁନନ୍ଦଂ ଦ୍ରୁହିଣ ହରବନ୍ଦ୍ୟଂ ବ୍ରଜପତି
ମହାଶୃଙ୍ଗଂ ନନ୍ଦଂ ଚ ପରମ କୃତଜ୍ଞଂ କ୍ରତୁପତିମ୍
ଚିଦାନନ୍ଦଂ କନ୍ଦଂ ନିଖିଳ ଜଗତୋ ନିଶ୍ଚିତ ମିଦଂ
ସଦା ଗୋପୀନାଥଂ ପରମ ସୁଖଦଂ ତଂ ଭଜତରେ ॥

ଗିରାଂ ମାର୍ଗାତୀତଂ ନିଗମ ବ୍ରଜଗୀତଂ ଭବହରଂ
ଧିୟା ଧୀରୈର୍ଧ୍ୟେୟ ଶ୍ରବଣ ଯୁଗପେୟଂ ମୁନିବରୈଃ
ଅମର୍ତ୍ତ୍ୟୈଃ ସଂପ୍ରୀତଂ ଦନୁଜ ବିପରୀତଂ ଶିବକରଂ
ସଦା ଗୋପୀନାଥଂ ପରମ ସୁଖଦଂ ଭଜତରେ ॥

ପରେ ଯସ୍ମିନ୍ ନିତ୍ୟଂ ନିଖିଳ ମୁନୟୋ ଶୁଦ୍ଧମନସୋ
ରମନ୍ତେ ବେଦାନ୍ତେ ବିହତ ପରଯତ୍ନା ଯତିବରାଃ
ଭବଂ ହିତ୍ୱ ସତ୍ୟେଽନବରତ ସୁଖେ ସ୍ୱାତ୍ମବପୁସି
ସଦା ଗୋପୀନାଥଂ ପରମ୍ ସୁଖଦଂ ତଂ ଭଜତରେ ॥

ଅନିତ୍ୟେଽସ୍ମିନ୍ ବିଶ୍ୱେଜନରତିମୟେ ଦୁଃଖିତମନା
ମୁମୁକ୍ଷୁଃ ସତ୍ କଶ୍ଚିତ୍ ଭଜତି ବିମଳଂ ଜ୍ଞାନ ପରମମ୍
ତତୋ ଯଂ ଜାନନ୍ ବୈତୁଦତି ‌ନ ପୁନଃ ଦୁଃଖ ନଚୟୈଃ
ସଦା ଗୋପୀନାଥଂ ପରମ ସୁଖଦଂ ତଂ ଭଜତରେ ॥

ଉପେନ୍ଦ୍ରଂ ବୈକୁଣ୍ଠଂ ଗଜରିପୁହରଂ ନୀତି ନିପୁଣଂ
ପରାତ୍ମାନଂ ବୁଦ୍ଧଂ ନିଖିଳ ଜନପୂଜ୍ୟଂ ସୁରନୁତମ
ହୃଷୀକେଶଂ ବାଳଂ ବିମଳ ବନମାଳଂ ମୁରରିପୁଂ
ସଦା ଗୋପୀନାଥଂ ପରମ ସୁଖଦଂ ତଂ ଭଜତରେ ॥

- ଇତି ଶ୍ରୀ ଗୋପୀନାଥାଷ୍ଟକମ୍ ସମ୍ପୂର୍ଣ୍ଣମ୍

●●●



## ପ୍ରଥମ ଅଧ୍ୟାୟ

# ଶ୍ରୀ ଶ୍ରୀ କ୍ଷୀରୋଚରା ଗୋପୀନାଥ ଓ ଲୀଳା ରହସ୍ୟ

ପୂଣ୍ୟଭୂମି ଓ ଦେବଭୂମି ଉତ୍କଳ । ଯେଉଁ ଦେଶର ଜଗତର ନାଥ ସ୍ୱୟଂ ଜଗନ୍ନାଥ ନୀଳକନ୍ଦରରେ ବିରାଜମାନ ହୋଇ ପତିତମାନଙ୍କୁ ଉଦ୍ଧାର କରୁଛନ୍ତି, ସେହି ପୂଣ୍ୟଭୂମି ଉତ୍କଳର ଉତ୍ତର ସୀମାର ବାଲେଶ୍ୱର ଜିଲ୍ଲା ଅବସ୍ଥିତ । ବାଲେଶ୍ୱର ସଦରମହକୁମା ଠାରୁ ପ୍ରାୟ ଆଠ କିଲୋମିଟର ଦୂରରେ ରେମୁଣା ଅବସ୍ଥିତ । 'ରମଣ' ଶବ୍ଦରୁ 'ରେମୁଣା' ବା 'ରମଣୀୟ' ସ୍ଥାନର ଉତ୍ପତ୍ତି ହୋଇଛି । ଏହା ଗୁପ୍ତ ବୃନ୍ଦାବନ ନାମରେ ବିଶ୍ୱବିଦିତ । ଏଠାରେ ଶ୍ରୀ ଶ୍ରୀ କ୍ଷୀରଚୋରା ଗୋପୀନାଥଙ୍କ ମନ୍ଦିର ବିରାଜିତ । ଭଗବାନ ଶ୍ରୀ ବିଷ୍ଣୁଙ୍କର ଦଶାବତାର ମଧ୍ୟରୁ ଏହା ପ୍ରଭୁଙ୍କର ଦ୍ୱାପର ଯୁଗର କୃଷ୍ଣାବତାର ଲୀଳାର ପ୍ରତୀକ । ତ୍ରେତୟା ଯୁଗରେ ପ୍ରଭୁ ଶ୍ରୀରାମଚନ୍ଦ୍ର ପିତୃ ସତ୍ୟ ରକ୍ଷା ନିମନ୍ତେ ଚିତ୍ରକୂଟ ପର୍ବତରେ ଅବସ୍ଥାନ କରିଥିଲେ । ଏକଦା ବର୍ଷା ଋତୁର ପ୍ରକୋପତାକୁ ସହ୍ୟ କରି ନପାରି ମାତା ଜାନକୀ ଭୟ ନାଶକ ଜୈମିନୀ ଋଷିଙ୍କ ନାମ ଜପ କରିବାକୁ ଲାଗିଲେ । ବର୍ଷା କମିଯାଆନ୍ତେ ପୟସ୍ୱିନୀ ଗାଭିମାନେ ଋଷିମାନଙ୍କ କୁଟୀରରୁ ବାହାରି କଞ୍ଚା ଘାସ ଭକ୍ଷଣ ଅନ୍ୱେଷଣରେ ବାହାରିଯିବାର ଦେଖି ପ୍ରଭୁ ଆଗାମୀ ଯୁଗର(ଦ୍ୱାପର)ଲୀଳାଖେଳା ବିଷୟରେ କହିବାକୁ ଲାଗିଲେ । ରାମ ଅବତାରରେ ସେ ଅନେକ ଦୁଃଖ କଷ୍ଟ ଭୋଗିଲେଣି ଓ ପ୍ରଜାମାନଙ୍କୁ ସନ୍ତୁଷ୍ଟ କରିବା ନିମନ୍ତେ ସବୁକିଛି ତ୍ୟାଗ କରିବାକୁ ପଡ଼ିବ । ତେଣୁ ମନରେ ଅବଶୋଷ ରହିଯିବ, ଏକଥା ଜାଣି ସେ ଦ୍ୱାପର ଯୁଗରେ ସଖୀ, ସଖା ଓ ଗାଭିଙ୍କ ମେଳରେ ଲୀଳା ରଚନା କରିବେ ।

ମାତାଙ୍କ ଅନୁରୋଧ ରକ୍ଷାକରି ପ୍ରଭୁ ଦ୍ୱାପର ଯୁଗର ଲୀଳା (ବୃନ୍ଦାବନ) ଖେଳାର ଏକ ନିଖୁଣ ଚିତ୍ର କଳା ମୁଗୁନି ପ୍ରସ୍ତରରେ ଖୋଦିତ କରି ଦେଖାନ୍ତେ, ମାତାଙ୍କ କର ସ୍ପର୍ଶରେ ତାହା ସଂଜିବୀତ ହୋଇ ଉଠିଲା । ଉକ୍ତ ୪ଫୁଟ୍ ଉଚ୍ଚ, ୨ ଫୁଟ୍ ଓସାର ଓ ୩ଫୁଟ୍ ଲମ୍ବର ପ୍ରସ୍ତର ମୂର୍ତ୍ତିର ପୂଜା ସେବା ମାତା ସ୍ୱହସ୍ତରେ କରିବାକୁ ଲାଗିଲେ । ଇତି ଅବସରରେ ଲଙ୍କାର ରାଜା ଦୁଷ୍ଟ ରାବଣ ମାତା ସୀତାଙ୍କୁ ଅପହରଣ କରନ୍ତେ ପ୍ରଜାପତି ବ୍ରହ୍ମା ଉକ୍ତ ବିଗ୍ରହ ପୂଜାର ଦାୟିତ୍ୱ ନେଲେ ।

ତତ୍କାଳୀନ କଳିଙ୍ଗର ରାଜା ଲାଙ୍ଗୁଳା ନରସିଂହ ଦେବ ତାଙ୍କ କନ୍ୟାର ବିବାହ ସମ୍ପନ୍ନ କରି ସସ୍ତ୍ରୀକ ଚିତ୍ରକୂଟ ପର୍ବତ ଭ୍ରମଣରେ ଯାଆନ୍ତେ ଶ୍ରୀରାମଚନ୍ଦ୍ରକୃତ ବିଗ୍ରହକୁ ସେଠାରେ ଦେଖି, ପୂଜାର୍ଚ୍ଚନା କରି ଉକ୍ତ ବିଗ୍ରହକୁ ସାଙ୍ଗରେ ନିଜ ଦେଶକୁ ନେବା ପାଇଁ ଇଚ୍ଛା କଲେ । ରାତ୍ରିରେ ଉକ୍ତ ବିଗ୍ରହ ରାଜାଙ୍କୁ ସ୍ୱପ୍ନାଦେଶ କଲେ ଯେ, ସେ 'ମଦନ ଗୋପାଳ' ଓ ବର୍ତ୍ତମାନ କଳିଯୁଗ ହୋଇଥିବାରୁ ସେ ସେଠାରେ ରହିବାକୁ ଚାହୁଁ ନାହାନ୍ତି ଓ ତାଙ୍କୁ ଏକ ରମଣୀୟ ସ୍ଥାନରେ ସ୍ଥାପନ କରିବାକୁ ଆଦେଶ ଦେଲେ । ରାଜା ଓ ରାଣୀ ସ୍ୱଦେଶକୁ ପ୍ରତ୍ୟାଗମନ କରନ୍ତେ ଉକ୍ତ ବିଗ୍ରହକୁ 'ଜୟ ଗୋପାଳ' ନାମ ଦେଇ ଘେନି ଯାଆନ୍ତେ ରାସ୍ତାରେ ଏକ ରମଣୀୟ ସ୍ଥାନ ଯେଉଁଠିକି ଶ୍ରୀରାମଚନ୍ଦ୍ର କୃତ 'ସପ୍ତଶରା' ନଦୀ କୁଳୁକୁଳୁ ନାଦରେ ବହିଯାଉଥାଏ ଓ ନିକଟରେ ଶ୍ରୀ ଗାର୍ଗେଶ୍ୱର ମହାଦେବଙ୍କ ଶିବ ମନ୍ଦିର ବିରାଜମାନ, ନିକଟରେ ଏକ ଗୋପାଳ ସାହି, ସେଇଠି ପାଲିଙ୍କି ଅଟକି ଯାଆନ୍ତେ ରାତ୍ରିରେ ଜୟଗୋପାଳ ଉକ୍ତ ସ୍ଥାନରେ ତାଙ୍କୁ ସ୍ଥାପନ କରିବାକୁ ଆଦେଶ ଦିଅନ୍ତେ । ମହାରାଜ ଖ୍ରୀ. ୧୨୫୮ରେ ମନ୍ଦିର ନିର୍ମାଣ କରି ବିଗ୍ରହକୁ ସ୍ଥାପନ କଲେ । ଏହି ବିଗ୍ରହଟି ସଖା ଗୋପାଳ, ସଖୀ ଗୋପୀଙ୍କ ପରିବେଷ୍ଟିତ ହୋଇଥିବାରୁ ଏହାର ନାମକରଣ କଲେ ଶ୍ରୀ ଶ୍ରୀ ଗୋପୀନାଥ ରଖାଯାଇଥିଲା ।

ପ୍ରଭୁ ଶ୍ରୀଗୋପୀନାଥ ଭକ୍ତଶ୍ରେଷ୍ଠ ଶ୍ରୀ ଶ୍ରୀ ମାଧବେନ୍ଦ୍ର ପୁରୀଙ୍କ ପାଇଁ କ୍ଷୀରଚୋରି କରିଦେଇଥିବାରୁ ତାଙ୍କର ନାମ ହୋଇଛି ଶ୍ରୀ ଶ୍ରୀ କ୍ଷୀରଚୋରା ଗୋପୀନାଥ । ଖ୍ରୀ. ୧୫୬୮ରେ ହିନ୍ଦୁ ବିଦ୍ୱେଷୀ କଳାପାହାଡ଼ର ପ୍ରବଳ ଉତ୍ପୀଡ଼ନା ପୂର୍ବକ ଶ୍ରୀ ଶ୍ରୀ ଗୋପୀନାଥ ଗଭୀର ରାତ୍ରିରେ ମନ୍ଦିରରୁ ଯାଇ 'ଆରମାଳା'

ଗ୍ରାମର 'କଇଁସାଗିଆ' (ଅନନ୍ତ ସାଗର) ପୁଷ୍କରଣୀରେ ନିଜକୁ ଲୁକ୍‌କାୟିତ ରଖିଲେ । ଘଟଣା ଚକ୍ରରେ ଉକ୍ତ ପୁଷ୍କରଣୀର ସଂସ୍କାର କାର୍ଯ୍ୟ ଚାଲିଥିବା ଅବସ୍ଥାରେ ଜନୈକ ଶ୍ରମିକର କୋଦାଳ ଆଘାତ ବାଜିବାରୁ ଉକ୍ତ ବିଗ୍ରହକୁ ଉଦ୍ଧାର କରି ଭକ୍ତ ଶ୍ରୀ ଶ୍ରୀ ରସିକାନନ୍ଦ ଦେବଗୋସ୍ୱାମୀଙ୍କ ଦ୍ୱାରା ପୁଣି ରେମୁଣା ମନ୍ଦିରରେ ସ୍ଥାପନ କରାଗଲା । ପରେ ପରେ ମୟୂରଭଞ୍ଜର ମହାରାଜ, ବାଲେଶ୍ୱରସ୍ଥିତ ଅନେକ ଜମିଦାର ଓ ରେମୁଣାସ୍ଥ ଧନାଢ୍ୟ ବ୍ୟକ୍ତିଙ୍କ ଅର୍ଘ୍ୟ ଦାନରେ ବର୍ତ୍ତମାନର ଏହି ସମ୍ପୂର୍ଣ୍ଣ ମନ୍ଦିର ବିରାଜମାନ ।

ମନ୍ଦିରର ସିଂହଦ୍ୱାର ଦକ୍ଷିଣ ଦ୍ୱାର ଅଟେ । ଉକ୍ତ ମନ୍ଦିରର ମୁଖ୍ୟଦ୍ୱାର ପୂର୍ବ ଦିଗକୁ । ମନ୍ଦିରର ଭିତରକୁ ପ୍ରବେଶ ପାଇଁ ଷଡ଼ରିପୁ ସଦୃଶ ୬ଟି ପାହାଚ ଅଛି । ମୁଖ୍ୟ ମନ୍ଦିରକୁ ପ୍ରବେଶ ପାଇଁ ସତ୍ତ୍ୱ, ରଜ, ତମ ଗୁଣର ପ୍ରତୀକ ସଦୃଶ ୩ଟି ଦ୍ୱାର ଅଛି । ଶେଷରେ ଗର୍ଭଗୃହସ୍ଥ ସିଂହାସନର ମଧ୍ୟସ୍ଥଳରେ ହୃଦୟ ସୁନ୍ଦରଯୁକ୍ତ ଶ୍ରୀ ଶ୍ରୀ କ୍ଷୀରଚୋରା ଗୋପୀନାଥ, ବାମ ପାଖରେ ପାଦପଦ୍ମ ସୁନ୍ଦରଯୁକ୍ତ ଗୋବିନ୍ଦଜୀଉ ଓ ଦକ୍ଷିଣ ପାଖରେ ସୁଖ ପଦ୍ମଯୁକ୍ତ ମଦନମୋହନଜୀଉଙ୍କ ବିଗ୍ରହ ବିଦ୍ୟମାନ । ୧୮ଟି ଦିବ୍ୟ ଅକ୍ଷର ବିଶିଷ୍ଟ ବୈଦିକ ଶ୍ଲୋକରେ କୃଷ୍ଣଙ୍କୁ ମଦନମୋହନ, ଗୋବିନ୍ଦ ଓ ଗୋପୀନାଥ ବୋଲି ବର୍ଣ୍ଣନା କରାଯାଇଛି । ପ୍ରେମର ଦେବତା କାମଦେବଙ୍କୁ ସେ ସୁରକ୍ଷା ଦେଇ ପାରୁଥିବାରୁ ଗୋବିନ୍ଦ, ଗୋପୀମାନଙ୍କୁ ସେ ଦିବ୍ୟପ୍ରେମ ଦାନ କରୁଥିବାରୁ ଗୋପୀନାଥ । ମଦନମୋହନଙ୍କୁ ପୂଜା ସେବା କରିବା ଦ୍ୱାରା ଭଗବାନଙ୍କ ସହିତ ଆମର ସମ୍ବନ୍ଧ ସ୍ଥାପନ ହୁଏ । ଭୌତିକ ଇନ୍ଦ୍ରିୟମାନଙ୍କୁ ଦମନ କରି ସେ ଆଧାତ୍ମିକ ଜୀବନକୁ ସୁଗମ କରନ୍ତି । ଆକାର ସଦୃଶ ସେବା ପୂଜା କରାଯାଏ । କୃଷ୍ଣଙ୍କର ଭକ୍ତମାନଙ୍କୁ କୃପା ହେଲେ ଶ୍ରୀ ଶ୍ରୀ ଗୋପୀନାଥଙ୍କୁ ଉପଲବ୍ଧ କରିହୁଏ ।

ଗର୍ଭଗୃହରେ ସିଂହାସନରେ ତିନି ବିଗ୍ରହଙ୍କ ପାର୍ଶ୍ୱରେ ଦୋଳଗୋବିନ୍ଦ, ରାଧାରାଣୀ, କୃଷ୍ଣ,ବଟକୃଷ୍ଣ,ପଞ୍ଚତତ୍ତ୍ୱ,ଲଡୁଗୋପାଳ,ଗୌରାଙ୍ଗ ମହାପ୍ରଭୁ, ମଦନମୋହନ, ନରସିଂହ, ମହାଲକ୍ଷ୍ମୀ, ରାସବିହାରୀ ଓ ରାଧାରାଣୀ, ଶ୍ୟାମସୁନ୍ଦର ଓ ରାଧାରାଣୀ, ଆଣ୍ଠୁଆ ଗୋପାଳ, ଗୋପାଳ, ବାସୁଦେବ ଓ ଶାଳ ଗ୍ରାମ ପୂଜା ପାଉଛନ୍ତି ।

ବୈଷ୍ଣବ ମତାନୁଯାୟୀ ଯେଉଁ ତିଥି ସୂର୍ଯ୍ୟୋଦୟ ସମୟକୁ ଥାଏ, ସେହି ତିଥି ଅନୁସାରେ ଉକ୍ତ ମନ୍ଦିରରେ ପର୍ବପର୍ବାଣୀ ପାଳନ କରାଯାଏ । ମନ୍ଦିରରେ ମଙ୍ଗଳ ଆରତୀ ଠାରୁ ରାତ୍ର ଶୟନ ପର୍ଯ୍ୟନ୍ତ ଅଷ୍ଟ ଆରତୀ ହୋଇଥାଏ । ଏଠାକାର ଅମୃତ କେଳି ବା କ୍ଷୀରଭୋଗ ପୃଥିବୀ ବିଖ୍ୟାତ । ଶ୍ରୀ ଶ୍ରୀ ଗୋପୀନାଥଙ୍କ ଠାରେ ସପ୍ତାହରେ ୭ଦିନରେ ବାର ଅନୁସାରେ ସେହି ରଙ୍ଗର ବସ୍ତ୍ର ପରିଧାନ କରାଯାଏ । ମନ୍ଦିରରେ ପଣା ସଂକ୍ରାନ୍ତି, ଅକ୍ଷୟ ତୃତୀୟା, ନୃସିଂହ ଚତୁର୍ଦ୍ଦଶୀ, ଚନ୍ଦନ ପୂର୍ଣ୍ଣିମା, ଦେବସ୍ନାନ ପୂର୍ଣ୍ଣିମା, ରଥଯାତ୍ରା, ଚିତାଲାଗି ଅମାବାସ୍ୟା, ଝୁଲଣଯାତ୍ରା, ଜନ୍ମାଷ୍ଟମୀ, ନନ୍ଦୋତ୍ସବ,ଶ୍ରୀରାଧାଷ୍ଟମୀ, ସୁନିଆଁ ଓ ବାମନ ଜନ୍ମ, ନିୟମ ସେବା(ଦଶହରା ଠାରୁ କାର୍ତ୍ତିକ ରାସପୂର୍ଣ୍ଣମୀ ପର୍ଯ୍ୟନ୍ତ), ଗୋବର୍ଦ୍ଧନ ପୂଜା ଓ ଅନ୍ନକୂଟ ମହୋତ୍ସବ, ରାସଯାତ୍ରା, ଗୋଷ୍ଠାମୀ, ଅଁଳା ନବମୀ ଆକାଶ ଦୀପ, ଗରୁଡ଼ ଦ୍ୱାଦଶୀ, ଧନୁ ସଂକ୍ରାନ୍ତି, ବସନ୍ତ ପଞ୍ଚମୀ, ମହୋତ୍ସବ, ମାଣିକ ଖନ୍ଦା, ଦୋଳ ପୂର୍ଣ୍ଣିମା ଆଦି ପର୍ବପର୍ବାଣୀ ମହାସମାରୋହରେ ପାଳନ କରାଯାଏ ।

●●●



## ଦ୍ୱିତୀୟ ଅଧ୍ୟାୟ

# ଶ୍ରୀ ଶ୍ରୀ ମାଧବେନ୍ଦ୍ର ପୁରୀଙ୍କ ଆର୍ବିଭାବ
# ଓ
# କ୍ଷୀରଚୋରା ନାମକରଣ

ମାଧବେନ୍ଦ୍ର ପୁରୀ ପ୍ରାୟ ୧୪୪୫ ଖ୍ରୀ.ରେ କିଛି ବର୍ଷ ପୂର୍ବେ ଫାଲ୍‌ଗୁନ ମାସ ଶୁକ୍ଳ ଏକାଦଶୀ ତିଥିରେ ପୂର୍ବ ବଙ୍ଗର ଶ୍ରୀହଟ୍ଟ ଜିଲ୍ଲା ଅନ୍ତର୍ଗତ ପୂର୍ଣ୍ଣାପାଟକ ନାମକ ଏକ କ୍ଷୁଦ୍ର ଗ୍ରାମରେ ଏକ ବ୍ରାହ୍ମଣ ପରିବାରରେ ଜନ୍ମ ହୋଇଥିଲେ । ତାଙ୍କର ପିଲାଦିନର ନାମ ଥିଲା ମାଧବଧର । ସେ ବିବାହ କରିଥିଲେ । ମାତ୍ର ତାଙ୍କର ସ୍ତ୍ରୀ ଏକ ପୁତ୍ର ସନ୍ତାନ ଜନ୍ମଦେଇ ଇହଲୀଳା ସମ୍ବରଣ କରିବାରୁ ସେ ପୁତ୍ର ବିଷ୍ଣୁ ଦାସଙ୍କୁ ସାଙ୍ଗରେ ନେଇ ଗଙ୍ଗାକୂଳବର୍ତ୍ତୀ ବିଷ୍ଣୁ ଗ୍ରାମରେ ନିଜର ପ୍ରିୟ ଶିଷ୍ୟ କମଳାକ୍ଷ (ଅଦ୍ୱୈତ୍ୟଚାର୍ଯ୍ୟ)ଙ୍କ ନିକଟରେ ରଖି ଦକ୍ଷିଣ ଭାରତକୁ ତୀର୍ଥ ପର୍ଯ୍ୟଟନରେ ବାହାରିଗଲେ । ମାଧବଚାର୍ଯ୍ୟ ସଂପ୍ରଦାୟଭୁକ୍ତ ଲକ୍ଷ୍ମୀପତି ଥିଲେ ମାଧବେନ୍ଦ୍ର ପୁରୀଙ୍କ ଗୁରୁ । ସେ ବୈଷ୍ଣବ ହେବା ପରେ ନିୟମାନୁସାରେ ଶିଖା-ସୂତ୍ର (ପଇତା) ପରିତ୍ୟାଗ କରିଥିଲେ ।

ମାଧବେନ୍ଦ୍ର କାଶୀରେ ଉଭୟ ଅଧ୍ୟୟନ ଓ ଅଧାପନା କାର୍ଯ୍ୟ କରୁଥିଲେ । ସେ କାଶୀରେ ସ୍ଥାପିତ ବିଦ୍ୟାଳୟର ଦାୟିତ୍ୱ ବ୍ୟାସଦେବଙ୍କ ଶିଷ୍ୟ ଶ୍ରୀମାଧବ ସରସ୍ୱତୀଙ୍କ ଉପରେ ନ୍ୟସ୍ତକରି ତୀର୍ଥ ପର୍ଯ୍ୟଟନର ବ୍ରଜଧାମକୁ ଗଲେ ଓ ଗିରି ଗୋବର୍ଦ୍ଧନଠାରେ ପହଞ୍ଚିଲେ । ଦିନେ ସଂଧ୍ୟାରେ ଗୋବିନ୍ଦ କୁଣ୍ଡରେ ସ୍ନାନ ସାରି ଅନାହାରରେ ସେ ଏକ ବୃକ୍ଷମୁଳେ ଧ୍ୟାନରେ ବସିଥାନ୍ତି । ଜଣେ ସୁନ୍ଦର ସୁଢଳ ବାଳକ କିଛି କ୍ଷୀର ଆଣି ତାଙ୍କୁ ପିଇବାକୁ ଦେଇ ପାତ୍ରଟିକୁ ପରେ ନେଇଯିବ

ବୋଲି କହିଲା । ମାତ୍ର ପିଲାଟି ନଆସିବାରୁ ସେ ତା କଥା ଭାବି ନାମ ଜପ କରି ଶୋଇପଡ଼ିଲେ । ଅର୍ଦ୍ଧରାତ୍ରରେ ବାଳକଟି ସ୍ୱପ୍ନାଦେଶ ହୋଇ ପୁରୀ ଗୋସେଇଁଙ୍କ ହସ୍ତଧରି ଏକ ଘଞ୍ଚ ଜଙ୍ଗଲ ନିକଟସ୍ଥ ସ୍ଥାନକୁ ନେଇଯାଇ କହିଲା – 'ମୁଁ ଗିରି ଗୋବର୍ଦ୍ଧନଧାରୀ ଶ୍ରୀକୃଷ୍ଣ ପୌତ୍ର ବ୍ରଜନାଭ ଦ୍ୱାରା ସ୍ଥାପିତ । ତୁମେ ମୋର ଭକ୍ତ । ତୁମ ଆଗମନକୁ ଅପେକ୍ଷା କରି ରହିଥିଲି । ମୋତେ ଏଠାରେ ଭୀଷଣ କଷ୍ଟ ହେଉଛି । ମ୍ଳେଛ ଓ ଯବନ ମାନଙ୍କ ଦାଉରୁ ରକ୍ଷା କରିବା ପାଇଁ ମୋତେ ଏଠାରେ ମଠ ସ୍ଥାପନ ସ୍ଥାପିତ କରାଯାଇଛି । ତୁମେ ମୋତେ ଏଠାରୁ ଉଦ୍ଧାର କରି ଗିରି ଗୋବର୍ଦ୍ଧନରେ ମଠ ସ୍ଥାପନକରି ପୂଜା କର ।' ପରଦିନ ପୁରୀ ଗୋସେଇଁ ଗ୍ରାମ୍ୟ ଲୋକଙ୍କୁ ଏକତ୍ରିତ କରି ସେଇ ବଡ଼ ଓ ଓଜନଦାର ବିଗ୍ରହକୁ ଉଦ୍ଧାର କଲେ । ମଥୁରାସ୍ଥ ଧନୀ ବ୍ୟକ୍ତିମାନେ ମନ୍ଦିର ନିର୍ମାଣର ଦାୟିତ୍ୱ ନେଲେ । ଗୋସେଇଁ ତାଙ୍କର ଶିଷ୍ୟଙ୍କ ହାତରେ ସେବା ପୂଜାର ଦାୟିତ୍ୱ ଦେଇ ଦୁଇବର୍ଷ ପାଇଁ ତୀର୍ଥରେ ବାହାରିଗଲେ । ତୀର୍ଥରୁ ଫେରିବା ପରେ ଦିନେ ରାତ୍ରିରେ ଗିରି ଗୋବର୍ଦ୍ଧନଧାରୀ ତାଙ୍କୁ ସ୍ୱପ୍ନାଦେଶ କଲେ ନୀଳାଚଳ ଧାମରୁ ମଳୟଜ ଚନ୍ଦନ ଆଣି ତାଙ୍କ ଶ୍ରୀଅଙ୍ଗରେ ଲେପନ କଲେ ଯାଇ ତାଙ୍କ ଅଙ୍ଗରେ ତାପ କମିବ । ମାଧବେନ୍ଦ୍ର ନିଦ୍ରା ତ୍ୟାଗକରି ଭକ୍ତି ଗଦ୍ ଗଦ୍ ହୋଇ ପ୍ରଭୁଙ୍କୁ ପ୍ରଣାମ ଜଣାଇଲେ ଓ ପରଦିନ ନୀଳାଚଳ ଯାତ୍ରାରେ ବାହାରିଲେ । ନୀଳାଚଳ ଯିବା ରାସ୍ତାରେ ପଞ୍ଚତୀର୍ଥ ରେମୁଣାକୁ ଯାଇ ଶ୍ରୀଗୋପୀନାଥଙ୍କୁ ଦର୍ଶନ କଲେ । ପ୍ରଭୁଙ୍କୁ ଦର୍ଶନ କରନ୍ତେ ସେ ଭାବବିହ୍ୱଳ ହୋଇ ନାଚି ନାଚି ପ୍ରଭୁଙ୍କ ଗୁଣ କୀର୍ତ୍ତନ କରିବାକୁ ଲାଗିଲେ । ସନ୍ଧ୍ୟା ଆଳତୀ ପରେ ମନ୍ଦିରର ଜଣେ ସେବକଙ୍କଠୁଁ ପ୍ରଭୁଙ୍କ ବିଷୟ ଓ ସେବା ପୂଜା ବିଧି ବିଷୟରେ ଅବଗତ ହୁଅନ୍ତେ କ୍ଷୀରଭୋଗ(ଅମୃତକେଳି) ସ୍ୱାଦନର ଲାଳସା ମନରେ ଜାତ ହେଲା । ମାତ୍ର ସେ ସନ୍ୟାସୀ ହୋଇଥିବାରୁ ମାଗି ଖାଇଲେ ନାହିଁ କି କେହି ତାଙ୍କୁ ଯାଚିଲେ ନାହିଁ । ଉକ୍ତ ରାତ୍ରିରେ ସେ ମନ୍ଦିରର ଅନତିଦୂରରେ ଥିବା ହାଟ ଚାଳିଆରେ ରାତ୍ରି ଯାପନ କରନ୍ତେ ପ୍ରଭୁ ଶ୍ରୀଗୋପୀନାଥ ଭକ୍ତର ଇଚ୍ଛା ପୂରଣ ନିମନ୍ତେ ତାଙ୍କର ମୁଖ୍ୟ ପୂଜାରୀଙ୍କୁ ସ୍ୱପ୍ନାଦେଶ ଦେଲେ ଯେ ତାଙ୍କ ଅଞ୍ଚଳ ତଳେ ଲୁଚାଇ ରଖିଥିବା କ୍ଷୀରଭାଣ୍ଡଟିକୁ ଉକ୍ତ ମାଧବେନ୍ଦ୍ର ପୁରୀଙ୍କୁ ଦେବା ପାଇଁ । ପୂଜକ ଶଯ୍ୟତ୍ୟାଗ କରି ସେହି ଗଭୀର ରାତ୍ରିରେ କ୍ଷୀରଭାଣ୍ଡକୁ ଭକ୍ତ ମାଧବେନ୍ଦ୍ରପୁରୀଙ୍କୁ ପ୍ରଦାନ କଲେ । ଗୋପୀନାଥଙ୍କ ଭୋଗ ପାଇଁ ଲାଗିଥିବା ୧୨ଟି ଭାଣ୍ଡରୁ ସେ ଗୋଟିଏ ଭାଣ୍ଡ ଲୁଚାଇ ତାଙ୍କର ଭକ୍ତକୁ

ଦେଇଥିବାରୁ ସେଦିନଠାରୁ ଗୋପୀନାଥଙ୍କ ନୂତନ ନାମ ହେଲା ଶ୍ରୀ ଶ୍ରୀ କ୍ଷୀରଚୋରା ଗୋପୀନାଥ । ପରଦିନ ପୁରୀ ନୀଳାଚଳ ଧାମ ଯାତ୍ରା କଲେ ଓ ଜଗନ୍ନାଥଙ୍କୁ ଦର୍ଶନ କରି ଭକ୍ତି ପ୍ରେମରେ ଭୋଳ ହୋଇ ନୃତ୍ୟ କରିବାକୁ ଲାଗିଲେ । ତାଙ୍କ ଆଗମନ କାରଣ ଗଜପତି ଜାଣିପାରି ମଳୟଜ ଚନ୍ଦନ କାଠ ଦେଇଥିଲେ । ଫେରିବା ବାଟରେ ଗୋସେଇଁ ପୁଣି ରେମୁଣା ଆସି ନିଜର ପରିଚୟ ପ୍ରଦାନ ନକଲେ ମଧ୍ୟ ସେବକମାନେ ତାଙ୍କୁ ଚିହ୍ନିପାରି କିଛିଦିନ ରହଣି ପାଇଁ ତାଙ୍କୁ ଅନୁରୋଧ କଲେ । ସେଦିନ ରାତ୍ରିରେ ଗିରି ଗୋବର୍ଦ୍ଧନଧାରୀ ତାଙ୍କୁ ସ୍ୱପ୍ନାଦେଶ କଲେ ଯେ, ଶ୍ରୀଗୋପୀନାଥ ହେଉଛନ୍ତି ସେହି ଗିରି ଗୋବର୍ଦ୍ଧନଧାରୀ । ତେଣୁ ଗୋପୀନାଥଙ୍କ ଅଙ୍ଗରେ ଚନ୍ଦନ ଲେପନ କଲେ ତାଙ୍କ ଅଙ୍ଗର ତାପ ନାଶ ହୋଇଯିବ ।

ପ୍ରଭୁଙ୍କ ଆଦେଶରେ ଚନ୍ଦନ ଘୋରଇଯାଇ ଗୋପୀନାଥଙ୍କ ଶ୍ରୀ ଅଙ୍ଗରେ ଲେପନ କରାଗଲା । ସେଦିନ ଥିଲା ପବିତ୍ର ପଣା ସଂକ୍ରାନ୍ତି । ସେହିଦିନଠାରୁ ୪୨ଦିନ ଧରି (ଜ୍ୟେଷ୍ଠ ମାସ ୧୨ ଦିନ ପର୍ଯ୍ୟନ୍ତ) ଗୋପୀନାଥଙ୍କ ଶ୍ରୀଅଙ୍ଗରେ ଚନ୍ଦନ ଲେପାଯାଇ ତାଙ୍କ.ଶରୀରରୁ ତାପ ନାଶ କରାଯାଏ ଓ ଏବେ ମଧ୍ୟ ସେଇ ବିଧି ରହିଆସିଛି । ଅକ୍ଷୟ ତୃତୀୟା ଓ ଚନ୍ଦନ ପୂର୍ଣ୍ଣିମା ୨ଦିନ ସର୍ବାଙ୍ଗ ଲେପନ ହୁଏ ଓ ବାକି ୪୦ଦିନ ବକ୍ଷ ଲେପନ ହୁଏ । ବର୍ଷାଋତୁ ଶେଷରେ ମାଧବେନ୍ଦ୍ରପୁରୀ ସ୍ୱସ୍ଥାନ ପ୍ରତ୍ୟାବର୍ତ୍ତନ କଲେ ମାତ୍ର ମଝିରେ ମଝିରେ ରେଣୁଣା ଆସୁଥାନ୍ତି । ତାଙ୍କର ଏକ କଠଉ (ପାଦୁକା) ରେମୁଣାରେ ରହିଯାଇଥିଲା ଓ ଜଣେ ଭକ୍ତ ଉକ୍ତ ପାଦୁକା ସ୍ଥାପନକରି ପୂଜାର୍ଚ୍ଚନା କରୁଥିଲେ ।

ମାଧବବେନ୍ଦ୍ରପୁରୀଙ୍କ ଜନ୍ମ ବୃତ୍ତାନ୍ତରୁ ଜଣାଯାଏ ଯେ, ସେ ଥିଲେ ଶ୍ରୀକୃଷ୍ଣ ଅଷ୍ଟଦ୍ୱତୀ ମଧ୍ୟରେ ପୌର୍ଣ୍ଣମାସୀ ନାମକ ସଖୀ । ଖ୍ରୀ. ୧୪୮୪ ଚନ୍ଦନ ପୂର୍ଣ୍ଣିମାରେ ରେମୁଣାରେ ସେ ଇହଲୀଳା ସାଙ୍ଗ କରିଥିଲେ । ତାଙ୍କର ଶିଷ୍ୟ ଈଶ୍ୱରପୁରୀ ଗୁରୁଙ୍କୁ ସମାଧି ଦେଇଥିଲେ ଓ ତାଙ୍କର କାଷ୍ଠ ପାଦୁକାକୁ ପୂଜା କରୁଥିଲେ । ତାଙ୍କ ଜୀର୍ଣ୍ଣ ସମାଧି ପୀଠରେ ପୂର୍ଣ୍ଣ ସଂସ୍କାର ୧୯୪୮ ମାର୍ଚ୍ଚ ୨ୟ ସପ୍ତାହରେ ହୋଇଥିଲା ଓ ତାଙ୍କର ନୂତନ ବିଗ୍ରହ ମାଧବେନ୍ଦ୍ର ପୁରୀ ମଠରେ ପଶ୍ଚିମବଙ୍ଗ ବ୍ୟାରେକ୍‌ପୁରସ୍ଥିତ ନିତାଇ ଗୌରଭକ୍ତ ସେବାଶ୍ରମ ଜରିଆରେ ସ୍ଥାପିତ ହୋଇଛି । ଉକ୍ତ ସମାଧିପୀଠ ବର୍ତ୍ତମାନ ଶ୍ରୀ ଶ୍ରୀ କ୍ଷୀରଚୋରା ଗୋପୀନାଥ ମନ୍ଦିରର ଟ୍ରଷ୍ଟବୋର୍ଡ଼ ଦ୍ୱାରା ପରିଚାଳିତ ହେଉଛି ।

## ତୃତୀୟ ଅଧ୍ୟାୟ

# ଗୁପ୍ତ ବୃନ୍ଦାବନ
# ଓ
# ପଞ୍ଚତୀର୍ଥ ରେମୁଣା

### (୧) କ୍ଷୀରୋଚୋରା ଗୋପୀନାଥ :-

ପୁରାଣ ପ୍ରସିଦ୍ଧ ଶ୍ରୀ କ୍ଷୀରଚୋରା ଗୋପୀନାଥ ବର୍ତ୍ତମାନ ବାଲେଶ୍ୱର ଜିଲ୍ଲାର ରେମୁଣାଠାରେ ପୂଜିତ ହେଉଛନ୍ତି, ଯାହାକି ସ୍ୱୟଂ ପ୍ରଭୁ ରାମଚନ୍ଦ୍ରଙ୍କ ଦ୍ୱାରା ତ୍ରେତୟା ଯୁଗରେ ଖୋଦିତ ହୋଇ ମାତା ଜାନକୀଙ୍କ କର ସ୍ପର୍ଶରେ ସଂଜୀବିତ ହୋଇଥିଲା । ଏହା ଦ୍ୱାପର ଯୁଗର ପ୍ରଭୁଙ୍କର କୃଷ୍ଣ ଅବତାରର ଲୀଳାଖେଳା କରୁଥିବା ସ୍ମୃତିର ଏକ ପ୍ରତୀକ । ପ୍ରଥମେ ଲାଙ୍ଗୁଳା ନରସିଂହଦେବଙ୍କ ଦ୍ୱାରା ପ୍ରଭୁଙ୍କ ବିଗ୍ରହ ଉଦ୍ଧାର ହୁଅନ୍ତେ ଏହାର ନାମ ହେଲା ଶ୍ରୀଗୋପୀନାଥ ଓ ପରେ ଭକ୍ତ ଶ୍ରୀ ଶ୍ରୀ ମାଧବେନ୍ଦ୍ର ପୁରୀଙ୍କୁ ପ୍ରଭୁ ଶ୍ରୀଗୋପୀନାଥ କ୍ଷୀରଚୋରି କରିଥିବାରୁ ନାମ ହେଲା ଶ୍ରୀ ଶ୍ରୀ କ୍ଷୀରଚୋରା ଗୋପୀନାଥ । ମନ୍ଦିର ସିଂହାସନର ମଧ୍ୟସ୍ଥଳରେ ଶ୍ରୀଗୋପୀନାଥ, ବାମରେ ଗୋବିନ୍ଦଜୀଉ ଓ ଦକ୍ଷିଣକୁ ମଦନମୋହନଜୀଉଙ୍କ ବିଗ୍ରହ ବିଦ୍ୟମାନ ଓ ଏକ ପାର୍ଶ୍ୱରେ ଅନେକ ଛୋଟ ଛୋଟ ବିଗ୍ରହ ପୂଜା ପାଉଛନ୍ତି । ପ୍ରତିଦିନ ମନ୍ଦିରରେ ଅଷ୍ଟ ଆରତୀ ସମୟରେ ବିଭିନ୍ନ ପ୍ରକାର ଭୋଗ ଲାଗିଥାଏ ଓ ସପ୍ତାହର ସାତଦିନରେ ବାର ଅନୁଯାୟୀ ସେ ବସ୍ତ୍ର ପରିଧାନ କରିଥାନ୍ତି । ଏଠାରେ ପଣା ସଂକ୍ରାନ୍ତିଠାରୁ ଆରମ୍ଭକରି ଦୋଳ ପୂର୍ଣ୍ଣିମା ପର୍ଯ୍ୟନ୍ତ ସମସ୍ତ ମୁଖ୍ୟ ପର୍ବପର୍ବାଣୀ ଆଦି ପାଳନ କରାଯାଏ । ଏଠାକାର କ୍ଷୀରଭୋଗ (ଅମୃତକେଳୀ) ପୃଥିବୀ ବିଖ୍ୟାତ ।

### (୨) ଗାର୍ଗେଶ୍ୱର ଶିବ ମନ୍ଦିର:-

ସପ୍ତଶରା ନଦୀ କୂଳରେ ପୁରାଣ ପ୍ରସିଦ୍ଧ ଗାର୍ଗେଶ୍ୱର ଶିବ ମନ୍ଦିର । ସ୍ୱୟଂ ଭଗବାନ ଶ୍ରୀକୃଷ୍ଣଙ୍କର ନାମକରଣ କରିଥିବା ଗାର୍ଗେୟ ମୁନିଙ୍କ ନାମାନୁସାରେ ଉକ୍ତ ପାତାଳଫୁଟ ଶିବ ମନ୍ଦିରର ନାମ ଗାର୍ଗେଶ୍ୱର ମନ୍ଦିର ହୋଇଛି । ଏହାର ଉପର ଭୂମି ପତନ ଠାରୁ ମନ୍ଦିର ଭିତରେ ପତନର ଗଭୀର ୬ଫୁଟ୍ । ଅସୁରରାଜା ବାଣାସୁର ଏହାକୁ ସ୍ଥାପନ କରିଥିବାର ଜଣାଯାଏ । ସ୍ୱକୃତ ପଞ୍ଚଶିବ ମନ୍ଦିରକୁ ପ୍ରତିଦିନ ସେ ପୂଜାର୍ଚ୍ଚନା କରୁଥିଲେ । ମନ୍ଦିରର ପଶ୍ଚିମ ଦିଗରେ ଲାଙ୍ଗୁଳା ନରସିଂହଦେବଙ୍କ ଦ୍ୱାରା ଖନନ କରାଯାଇଥିବା ବ୍ରଜପୋଖରୀ ଏହି ମନ୍ଦିରର ଅଧୀନ । ଏଠାରେ ଶିବରାତ୍ରି ଦିନ ବହୁ ଯାତ୍ରୀଙ୍କୁ ସମାଗମ ହୁଏ ଏବଂ ଏହି ଉତ୍ସବକୁ ଭକ୍ତମାନେ ମହାସମାରୋହରେ ପାଳନ କରନ୍ତି ।

### (୩) ରାମଚଣ୍ଡୀ ମନ୍ଦିର :-

ଶ୍ରୀ ଶ୍ରୀ କ୍ଷୀରଚୋରା ମନ୍ଦିରର ବାୟୁକୋଣରେ ଏହି ରାମଚଣ୍ଡୀ ମନ୍ଦିର ଅବସ୍ଥିତ । ତ୍ରେତୟା ଯୁଗରେ ପ୍ରଭୁ ରାମଚନ୍ଦ୍ର ଗ୍ରାମଦେବତୀ ମାତା ଚଣ୍ଡୀଦେବୀଙ୍କୁ ପୂଜାକରିଥିବାରୁ ଏହାର ନାମ 'ରାମଚଣ୍ଡୀ' ଭାବରେ ପ୍ରସିଦ୍ଧିଲାଭ କରିଛି । ପବିତ୍ର ପଣା ସଂକ୍ରାନ୍ତି ଦିନ ଏଠାରେ ପ୍ରତିବର୍ଷ ଉଡ଼ାଯାତ୍ରା ପୂର୍ବକ ଅନେକ ଲୋକସମାଗମ ହୁଏ । ଏଠାକାର ଗ୍ରାମର ନାମ 'ଚଣ୍ଡୀସାହି' ବା 'ଚଣ୍ଡୀମଣ୍ଡଳ' ଓ ହାଟର ନାମ 'ଚଣ୍ଡୀହାଟ' ଅଦ୍ୟାପି ବିରାଜମାନ । ଶ୍ରୀ ରାମଦାସ ବାବାଜୀଙ୍କ ଶିଷ୍ୟାନୁଶିଷ୍ୟ ଶ୍ରୀ ରବିନ୍ ଶାହା ମାତାଙ୍କର ନାଟ ମନ୍ଦିରର ସଂସ୍କାର ୧୯୮୪ରେ କରିଛନ୍ତି ।

### (୪) ସପ୍ତଶରା ନଦୀ :-

ରେମୁଣା ମନ୍ଦିର ଛକରୁ ମଦାରପୁର ପଞ୍ଚାୟତ ଆଡ଼କୁ ଯେଉଁ ରାସ୍ତା ଶ୍ରୀଗୋପୀନାଥ ମନ୍ଦିର ପଶ୍ଚିମ ପଟରେ ଯାଇଛି, ସେହି ରାସ୍ତାରେ ଗଲେ ସପ୍ତଶରା ନଦୀ ଦେଖିବାକୁ ମିଳେ । ଏବେ ଏହି ନଦୀ ପୋତି ହୋଇ ଚାଷ ଜମିରେ ପରିଣତ ହୋଇଗଲାଣି । କେବଳ ପୂର୍ବ ଆଡ଼କୁ ନଦୀର ଧାର ରହିଛି ।

ତ୍ରେତୟା ଯୁଗରେ ପ୍ରଭୁ ମର୍ଯ୍ୟଦାପୁରୁଷ ରାମଚନ୍ଦ୍ର ପିତୃସତ୍ୟ ପାଳନାର୍ଥେ ପତ୍ନୀ ସୀତା ଓ ଅନୁଜ ଲକ୍ଷ୍ମଣଙ୍କ ସହିତ ଚଉଦ ବର୍ଷ ବନବାସ କରିଥିଲେ । ସେହି

ବନବାସ କାଳରେ ଦୁଷ୍ଟ ରାବଣ ସତୀ ସୀତାଙ୍କୁ ଅପହରଣ କରିନେଇଥିଲା । ପ୍ରଭୁ ରାମଚନ୍ଦ୍ର ରାବଣଙ୍କୁ ନିହତ କରି ସୀତାଙ୍କୁ ଉଦ୍ଧାର କରିଥିଲେ । ଅଯୋଧ୍ୟା ପ୍ରତ୍ୟାଗମନ ଅବସରରେ ପ୍ରଭୁ ରାମଚନ୍ଦ୍ର ଅନୁଜ ଲକ୍ଷ୍ମଣ ଓ ସୀତାଦେବୀ ରେମୁଣାରେ ବିଶ୍ରାମ ନେଇଥିଲେ ।

ସେହି ସ୍ଥାନରେ ମାସିକ ଋତୁସ୍ନାନ ପାଇଁ ସପ୍ତମ ଦିନରେ ମାତା ସ୍ରୋତସ୍ୱିନୀ ନଦୀରେ ସ୍ନାନ କରିବାକୁ ଇଚ୍ଛା ପ୍ରକାଶ କଲେ । ସେଠାରେ କୌଣସି ଜଳାଶୟ ନଥିବାରୁ ମାତାଙ୍କ ସ୍ନାନ ପାଇଁ ପ୍ରଭୁ ଶ୍ରୀରାମ ନିଜ ସପ୍ତଶର୍‌ରେ ସାତୋଟି ଜଳର ସ୍ରୋତ ସୃଷ୍ଟି କରିଥିଲେ ଓ ମାତା ସେଠାରେ ସ୍ନାନ କଲେ । ସେଦିନରୁ ସପ୍ତଶରା ନଦୀ ପବିତ୍ର ସ୍ଥାନରୂପେ ଜନାଦୃତ ହୋଇଛି ।

## (୫) ମାଧବେନ୍ଦ୍ର ପୁରୀ ମଠ :-

ଭକ୍ତ ଶିରୋମଣି ଶ୍ରୀ ଶ୍ରୀ ମାଧବେନ୍ଦ୍ରପୁରୀ ଗୋସ୍ୱାମୀ, ଯାହାଙ୍କ ପାଇଁ ପ୍ରଭୁ ଗୋପୀନାଥ କ୍ଷୀର ଚୋରାଇ କ୍ଷୀରଚୋରା ଗୋପୀନାଥ ନାମରେ ପୂଜା ପାଉଛନ୍ତି, ସେ ଏଠାରେ ସମାଧି ନିଅନ୍ତେ ତାଙ୍କର ପ୍ରିୟ ଶିଷ୍ୟ ଶ୍ରୀ ଶ୍ରୀ ଈଶରପୁରୀ ଉକ୍ତ ସ୍ଥାନରେ ତାଙ୍କର ପାଦୁକା ସ୍ଥାପନ କରିଥିଲେ । ତାଙ୍କର ପ୍ରତିମୂର୍ତ୍ତି ମଧ୍ୟ ଉକ୍ତ ମଠରେ ଅବସ୍ଥାପିତ ଅଛି । ଏହି ମଠ ଦାୟିତ୍ୱରେ ଥିବା ସନ୍ୟାସୀଙ୍କୁ ମହାରାଜ କୁହାଯାଏ । ସେ ପ୍ରତିଦିନ ମନ୍ଦିରରେ ଗୀତା, ଭାଗବତ, ଶ୍ରୀଚୈତନ୍ୟ ଚରିତାମୃତ ପଠନ କରନ୍ତି । ପ୍ରତିବର୍ଷ ଏଠାରେ ପୁରୀ ଗୋସ୍ୱାମୀଙ୍କ ମହାପ୍ରୟାଣ ଦିବସ ପାଳନ କରାଯାଏ ।

●●●



# ଚତୁର୍ଥ ଅଧ୍ୟାୟ

## ଶ୍ରୀ ଶ୍ରୀ କ୍ଷୀରୋଚରା ଗୋପୀନାଥଙ୍କ

## ପରମ ଭକ୍ତବୃନ୍ଦ

## ଶ୍ରୀପାଦ ଇଶ୍ୱରପୁରୀ

ଶ୍ରୀକୃଷ୍ଣ ଭକ୍ତି ପଥର ସର୍ବାଦି ସୂତ୍ରଧର ଶ୍ରୀପାଦ ମାଧବେନ୍ଦ୍ରପୁରୀଙ୍କର ମାଧମରେ ଅନାଦିକାଳରୁ ନିହିତ ପରମ ମାଧୁର୍ଯ୍ୟପୂର୍ଣ୍ଣ ଶ୍ରୀ ବ୍ରଜଲୀଳା ରସ ସ୍ୱରୂପତାର ପୂର୍ଣ୍ଣତାର ପରିଣତି ଚିନ୍ମୟ - ଭକ୍ତିକଳ୍ପ ବୃକ୍ଷର ନବାଙ୍କୁରର ଉଦ୍‌ଗମ ହେଲା । ତତ୍ପରେ ଶ୍ରୀପାଦ ଇଶ୍ୱରପୁରୀ ଗୁରୁ ଶ୍ରୀପାଦ ମାଧବେନ୍ଦ୍ରପୁରୀ ପାଦଙ୍କର ଅଭୟ ପଦାରବିନ୍ଦରେ ଆଶ୍ରୟ ଗ୍ରହଣକରି ପରମ ଆନ୍ତରିକତାପୂର୍ଣ୍ଣ ଗୁରୁ ସେବାରେ ବୈଶିଷ୍ଟ୍ୟରେ ବ୍ରହ୍ମାଦି ଦେବଗଣଙ୍କ ବାଞ୍ଛିତ ସୁଦୁର୍ଲଭ ପ୍ରେମଭକ୍ତି ଧନରେ ଧର୍ମି ହୋଇଥିଲେ । ଶ୍ରୀ ଗୌରସୁନ୍ଦର ତାଙ୍କୁ ଗୁରୁ ରୂପେ ବରଣ କରି ନିଜ ମୁଖରେ ତଦୀୟ ଅଚିନ୍ତ୍ୟ ମହିମାରାଶି ତାଙ୍କର ଅକ୍ଷୟକୀର୍ତ୍ତି ଶ୍ରୀଚୈତନ୍ୟ ଦୋବାରେ ପ୍ରମାଣ କରିଛନ୍ତି ।

ଜଗଦାଦି ଗୁରୁଙ୍କର ଶ୍ରୀପାଦ ଈଶ୍ୱରପୁରୀ ରାଢ଼ୀୟ ବ୍ରାହ୍ମଣ ବଂଶରେ ଶୁଭ ବୈଶାଖ ପୂର୍ଣ୍ଣିମାରେ ଶ୍ରୀକୁମାରହଟ୍ଟ ଠାରେ ପିତା ଶ୍ରୀ ଶ୍ୟାମସୁନ୍ଦର ଆଚାର୍ଯ୍ୟଙ୍କ ଗୃହରେ ଆର୍ବିଭାବ ହେଲେ । ପ୍ରଥମ ଜୀବନରେ ସେ ସଂସ୍କୃତ ବିଦ୍ୟା ଅଧୟନ ପୂର୍ବକ ବେଦବେଦାନ୍ତାଦି ଭକ୍ତିଶାସ୍ତ୍ରରେ ପାଣ୍ଡିତ୍ୟ ଅର୍ଜନ କରିଥିଲେ । ଏହାର ସାକ୍ଷ୍ୟ ସ୍ୱରୂପ ତାଙ୍କ ରଚିତ ଶ୍ରୀକୃଷ୍ଣ ଲୀଳାମୃତ ମହାକାବ୍ୟ ଅନ୍ୟତମ ।

ସେ ସର୍ବସ୍ୱ ତ୍ୟାଗକରି ଶ୍ରୀପାଦ ମାଧବେନ୍ଦ୍ରପୁରୀ ପାଦଙ୍କର ଶ୍ରୀଚରଣରେ ଆଶ୍ରୟ ଗ୍ରହଣ ପୂର୍ବକ କାୟ ମନୋବାକ୍ୟରେ ତାଙ୍କର ପରିଚର୍ଯ୍ୟା କାର୍ଯ୍ୟରେ ବ୍ରତୀ ହୋଇ ତାଙ୍କ ସଂଗରେ ଅବସ୍ଥାନ କରିବାକୁ ଲାଗିଲେ । କି ପ୍ରକାର ସେବାକଲେ ଶ୍ରୀ ଗୁରୁଙ୍କର ଅଯାଚିତ କରୁଣା ବଳରେ ମୂଢ଼ଜୀବ ଦୂରନ୍ତ ମାୟାର ବନ୍ଧନରୁ ମୁକ୍ତ ହୋଇ ଶୁଦ୍ଧ ଶ୍ରୀକୃଷ୍ଣ ପ୍ରେମଲାଭ କରି ଶ୍ରୀରାଧା ଗୋବିନ୍ଦଙ୍କର ଚିର, ଶାଶ୍ୱତ, ସେବା-ସୁଖ ଲାଭର ଅଧିକାରୀ ହୋଇପାରିବ, ତାହା ସେ ଦର୍ଶାଇ ଯାଇଛନ୍ତି ।

ରେମୁଣାରେ ଶ୍ରୀ ମାଧବେନ୍ଦ୍ରପୁରୀ ପାଦଙ୍କର ଅନ୍ତିମ ଅସୁସ୍ଥାବସ୍ଥାରେ ଶ୍ରୀ ଈଶ୍ୱରପୁରୀ ଏକାଧାରରେ ସ୍ୱହସ୍ତରେ ମଳମୂତ୍ରାଦି ପରିଷ୍କାର ତଥା ଗୃହ୍ୟସେବା କାର୍ଯ୍ୟାଦି ମାଧ୍ୟମରେ ଦୈହିକ ଓ ମାନସିକ ସୁଖ ପ୍ରଦାନ ପୂର୍ବକ ଗୁରୁଜନଙ୍କର ଆଶୀର୍ବାଦ ଲାଭ କରିଥିଲେ । ତତ୍ପରେ ଶ୍ରୀ ଗୁରୁକୃପାଲବ୍ଧ କୃଷ୍ଣପ୍ରେମରେ ପ୍ରମତ୍ତ ଓ ଶ୍ରୀଗୁରୁ ବିଚ୍ଛେଦ ଜନିତ ବିରହ ବ୍ୟଥାରେ ବିଧୁର ହୋଇ ପଡ଼ିଥିଲେ । ଆହାର ଓ ନିଦ୍ରାହୀନତାରୁ ଦେହ ଜୀର୍ଣ୍ଣଶୀର୍ଣ୍ଣ ପ୍ରାୟ ହୋଇଗଲା । ମଳିନ ବସନ ପରିଧାନ କରି ଓ ବାହ୍ୟଜ୍ଞାନ ବିସ୍ମୃତ ହୋଇ ଶ୍ରୀକୃଷ୍ଣ ପ୍ରେମୋନ୍ମତ୍ତତାରେ ଯଥାଚିତ ପର୍ଯ୍ୟଟନ କରିବାକୁ ଲାଗିଲେ । ତତ୍ପରେ ଶ୍ରୀ ଅଦ୍ୱୈତ୍ୟପ୍ରଭୁ ଭକ୍ତ ଦୁଃଖ ବିନାଶ ଲାଗି ଶ୍ରୀପାଦରେ ପୁରୀ ସମୀପରେ ନିଜର ବିଦ୍ୟାଗର୍ବ ଚୂର୍ଣ୍ଣକରି ଈଶ୍ୱରପୁରୀଙ୍କର ମହିମା ପ୍ରଚାର କରିବାକୁ ଲାଗିଲେ, ତତ୍‌ପରେ ମହାପ୍ରେମିକ ବୈଷ୍ଣବ୍ ସନ୍ୟାସୀ ବୋଲି ସ୍ୱୀକାର କଲେ ।

ସେଠାରେ ଗୋପୀନାଥ ଆଚାର୍ଯ୍ୟଙ୍କ ଗୃହରେ ଅବସ୍ଥାନ କରନ୍ତେ, ଅଦ୍ୱୈତ୍ୟ ପ୍ରଭୁ ପ୍ରତିଦିନ ସଂଧ୍ୟାରେ ତାଙ୍କୁ ନମସ୍କାର କରିବାକୁ ଗଲେ । ସେଠାରେ ସେ 'ଶ୍ରୀକୃଷ୍ଣ ଲୀଳାମୃତ' ରଚନା କରିଥିଲେ । ତତ୍ପରେ ଶ୍ରୀ ଗୟା ଧାମରେ ପିତୃପିଣ୍ଡ ଦାନରତ ଥିବା ସମୟରେ ଅଦ୍ୱୈତ୍ୟ ପ୍ରଭୁଙ୍କ ସହିତ ଈଶ୍ୱରପୁରୀଙ୍କର ଭେଟ ହୋଇଥିଲା । ଅଦ୍ୱୈତ୍ୟ ପ୍ରଭୁଙ୍କ ଅନୁନୟ, ବିନୟ ପରେ ଈଶ୍ୱରପୁରୀ ଅଦ୍ୱୈତ୍ୟ ପ୍ରଭୁଙ୍କ ଶ୍ରୀଦଶାକ୍ଷର ମନ୍ତ୍ର ଲୀଳା ମାଧ୍ୟମରେ ଶ୍ରୀଗୟାଧାମରେ ଏକତ୍ର ଅବସ୍ଥାନ କରିବାକୁ ଲାଗିଲେ ।

ତତ୍‌ପରେ ଶ୍ରୀମନ୍ ମହାପ୍ରଭୁ ଶ୍ରୀଗୟାଧାମରୁ ଶ୍ରୀଧାମ ନବଦ୍ୱୀପକୁ ପ୍ରତ୍ୟାବର୍ତ୍ତନ କରି ଶ୍ରୀକୃଷ୍ଣ ପ୍ରେମ ପ୍ରକାଶ ଲୀଳାନାଟ୍ୟର ଶୁଭ ଉଦ୍‌ବୋଧନ ଆରମ୍ଭ କଲେ । ଏଣେ ଶ୍ରୀ ଈଶ୍ୱରପୁରୀ ଏକମାତ୍ର ହୃଦୟ ସର୍ବସ୍ୱ ଶ୍ରୀଗୁରୁଦେବ

ଶ୍ରୀଳ ମାଧବେନ୍ଦ୍ରପୁରୀ ପାଦଙ୍କର ବିୟୋଗ ଜନିତ ନିଦାରୁଣ ବିରହ ବିଚ୍ଛେଦରେ ବେଶିଦିନ ଧରାଧାମରେ ଜୀବନ ଧାରଣ କରିବାକୁ ଚାହିଁଲେ ନାହିଁ । ଖ୍ରୀ. ୧୫୧୧ ଗୌର ଫାଲ୍‌ଗୁନୀ କୃଷ୍ଣ ଦ୍ୱାଦଶ ତିଥିରେ ଜଗଦ୍‌ଗୁରୁ ଶ୍ରୀ ଈଶ୍ୱରପୁରୀପାଦ ପାର୍ଥିବଲୀଳା ସମ୍ବରଣକରି ଅପ୍ରାକୃତିକ ନିତ୍ୟ ଲୀଳାରେ ଉପବିଷ୍ଟ ହେଲେ । ଶ୍ରୀପାଦଙ୍କର ଲୀଳା ସମ୍ବରଣର ପ୍ରାକ୍ କାଳ ତାଙ୍କର ନିତ୍ୟ ସେବକ ଶ୍ରୀଗୋବିନ୍ଦ ଦାସ ଓ ଶ୍ରୀ କାଶୀଶ୍ୱର ଗୋସ୍ୱାମୀ ନାମକ ଦୁଇ ଅନ୍ତରଙ୍ଗଙ୍କର ଆନ୍ତରିକତାପୂର୍ଣ୍ଣ ସେବାଗୁଣରେ ବିମୁଗ୍‌ଧ ହୋଇ ଉପଦେଶ ଦାନ ପ୍ରସଙ୍ଗରେ ଦୁର୍ଲଭ କୃପାଦାନ କରିଥିଲେ । ଶ୍ରୀପାଦଙ୍କ ଠାରୁ କୃପାଦେଶ ପ୍ରାପ୍ତହୋଇ ଶ୍ରୀଗୋବିନ୍ଦ ଦାସ ସିଧା ସଳଖ ନୀଳାଚଳ ଧାମରେ ଶ୍ରୀମାନ୍ ମହାପ୍ରଭୁଙ୍କ ସମୀପରେ ଉପନୀତ ହେଲେ ।

# ଶ୍ରୀ ଶ୍ରୀ ଶ୍ରୀଧର ସ୍ୱାମୀ

ଶ୍ରୀମଦ୍ ଭାଗବତର ବିଶ୍ୱ ବିଖ୍ୟାତ ଟୀକାକାର ଶ୍ରୀ ଶ୍ରୀ ଶ୍ରୀଧର ସ୍ୱାମୀଙ୍କର ପବିତ୍ର ଜନ୍ମସ୍ଥାନ ହେଉଛି ବାଲେଶ୍ୱର ଜିଲ୍ଲାର ରେମୁଣାସ୍ଥିତ 'ମୟୁରଗ୍ରାମ' ବା 'ମରେଇ ଗାଁ'ରେ । ପ୍ରାୟ ୧୩୦୦-୧୪୦୦ ଖ୍ରୀଷ୍ଟାବ୍ଦ ଭିତରେ ତାଙ୍କର ଜନ୍ମ ନିରୂପଣ କରାଯାଇଛି । ବିଭିନ୍ନ ମତାନୁସାରେ ତାଙ୍କର ପୂର୍ବାବସ୍ଥାନର ନାମ ଥିଲା ଶ୍ରୀଧର ଆଚାର୍ଯ୍ୟ । ତାଙ୍କର ଜନ୍ମସ୍ଥାନ ଓ ବଂଶ ପରିଚୟ ନେଇ ଅନେକ ମତଭେଦ ମଧ୍ୟ ଦେଖାଯାଏ । ତାଙ୍କର ଏକମାତ୍ର ପୁତ୍ର ହେଲେ ଶ୍ରୀକର ବିଦ୍ୟାର୍ଣ୍ଣବ । ସନ୍ୟାସ ଗ୍ରହଣ ପୂର୍ବକ ଯୋଗପରାୟଣ ଶ୍ରୀଧର 'ବ୍ରହ୍ମସମ୍ବୋର୍ଦ୍ଧିନୀ' ନାମ୍ନୀ ଶ୍ରୀଗୀତାର ଟୀକା ରଚନା କରିଥିଲେ । ଭାଣ୍ଡାରକାର ପ୍ରାଚ୍ୟ ଗବେଷଣା ପ୍ରତିଷ୍ଠାନର ଡିରେକ୍ଟର ପି.କେ. ଗୋଡ଼େ ମହାଶୟ ଶ୍ରୀଧର ସ୍ୱାମୀଙ୍କ ଆବିର୍ଭାବ କାଳ ୧୩୫୦-୧୪୫୦ ଖ୍ରୀଷ୍ଟାବ୍ଦ ମଧ୍ୟରେ ନିର୍ଣ୍ଣୟ କରିଛନ୍ତି । ଶ୍ରୀଧର ସ୍ୱାମୀଙ୍କ ସ୍ୱରଚିତ ଗ୍ରନ୍ଥରୁ ଜଣାଯାଏ ଯେ ସେ କେବଳ ଦ୍ୱୈତବାଦୀ ସଂପ୍ରଦାୟର କାଶୀବାସୀ ଏକଦଣ୍ଡ ସନ୍ୟାସୀ ଥିଲେ । ତାଙ୍କର ଗୁରୁ ଥିଲେ ପରମାନନ୍ଦ । କାଶୀରେ ଅବସ୍ଥାନ ପୂର୍ବକ ଶ୍ରୀ ବିନ୍ଦୁ ମାଧବଙ୍କ ସନ୍ତୋଷାର୍ଥେ ଚିତ ସୁଖାଚାର୍ଯ୍ୟଙ୍କ ବ୍ୟାଖ୍ୟା ଆଲୋଚନା କରି ସେ ବିଷ୍ଣୁ

ପୁରାଣର 'ଆତ୍ମପ୍ରକାଶ' ଟୀକା ରଚନା କରିଥିଲେ । ଶ୍ରୀମଦ୍ ଭାଗବତର 'ଭାବାର୍ଥ ଦୀପିକା' ଟୀକା ମଧ୍ୟ ସ୍ୱସଂପ୍ରଦାୟର ଅନୁରୋଧରେ ରଚନା କରିଥିଲେ । ସେ ଥିଲେ ଶ୍ରୀ ନୃସିଂହୋପାସକ । ଶ୍ରୀ ରାମକୃଷ୍ଣ ନନ୍ଦଙ୍କ 'ଦଣ୍ଡସ୍ୱାମୀ ମଠ'ରେ ବହୁଦିନ ଅବସ୍ଥାନ କରି ନୃସିଂହ ଦେବଙ୍କର ଉପାସନା ଓ କୋଠର ତପଶ୍ଚାର୍ଯ୍ୟା କରି ସିଦ୍ଧିଲାଭ କରିଥିଲେ ।

ଓଡ଼ିଶାର କୋଣାର୍କ ପଞ୍ଚସଖା ସାହିତ୍ୟ ଏକାଡେମୀ ପ୍ରକାଶନରେ ଅଧ୍ୟାପକ ଡକ୍ଟର ନିତ୍ୟାନନ୍ଦ ଶତପଥୀ ଶ୍ରୀଧର ସ୍ୱାମୀଙ୍କ ସମ୍ବନ୍ଧରେ କେତେ ଗୁଡ଼ିଏ ଉପାଦେୟ ତଥ୍ୟ ସଂଗ୍ରହ କରିଛନ୍ତି । ସେ ଓଡ଼ିଶାର ସଂସ୍କୃତ ଭାଗବତର ଟୀକା ଲେଖି ଶ୍ରୀମଦ୍ ଭାଗବତର ଆଦର ବଢ଼ାଇବା ସଙ୍ଗେ ସଙ୍ଗେ ଶ୍ରୀ ଜଗନ୍ନାଥ ଦାସ ଉକ୍ତ ସଂସ୍କୃତ ଭାଗବତର ଓଡ଼ିଆ ଅନୁବାଦ କରିବାରେ ପ୍ରେରଣା ଯୋଗାଇଥିଲେ । ଡକ୍ଟର ଏସ୍.କେ.ଦେ ଓ ଶ୍ରୀ ଶରତ ଚନ୍ଦ୍ର ମହାରଣାଙ୍କ ମତରେ ଶ୍ରୀଧର ସ୍ୱାମୀ ଢେଙ୍କାନାଳ ଜିଲ୍ଲାର 'ସପ୍ତଶଯ୍ୟା' ଠାରେ ଆଶ୍ରମ ନିର୍ମାଣକରି ନୃସିଂହ ମନ୍ତ୍ର ଦୀକ୍ଷିତ ହୋଇ ଶ୍ରୀମଦ୍ ଭାଗବତ ଓ ଶ୍ରୀ ବିଷ୍ଣୁ ପୁରାଣର ଟୀକା ରଚନା କରିଥିଲେ । କପିଳାସ ତୀର୍ଥରେ ଶ୍ରୀ ଭାଗବତର ଟୀକା ସ୍ୱାମୀ ଲେଖିଥିବାର ପ୍ରମାଣ ସ୍ୱରୂପ ସେଠାକାର ସ୍ଥିତ ବୃହତ୍ତମ ସ୍ୱାମୀ ପାଦଙ୍କର ସମାଧି । ଶ୍ରୀ ରାମକୃଷ୍ଣ ମିଶନର ସ୍ୱାମୀ ଶ୍ରୀ ଜଗଦୀଶ୍ୱରାନନ୍ଦ ମହାରାଜଙ୍କ ମତରେ ଶ୍ରୀଧର ସ୍ୱାମୀ କୃତ 'ସୁବୋଧ' ଟୀକା ହିଁ ସର୍ବୋପେକ୍ଷା ସଂକ୍ଷିପ୍ତ, ସରଳ,ସାରଗର୍ଭକ ଓ ପାଠ୍ୟ ଉପଯୋଗୀ ।

ଡକ୍ଟର ଏସ୍.କେ. ଦେଙ୍କ ମତରେ ଶ୍ରୀ ମାଧବେନ୍ଦ୍ରପୁରୀ, ଈଶ୍ୱରପୁରୀ ଓ ଶ୍ରୀଧର ସ୍ୱାମୀ ଶଙ୍କର ପନ୍ଥୀ ଥିଲେ । ଅଦ୍ୱୈତ ମତ ସହିତ ଶ୍ରମଦ୍ ଭାଗବତର ପ୍ରେମଭକ୍ତି ମୂଳକ ମତର ସମନ୍ୱୟରେ ସେ କହିଛନ୍ତି - ଭକ୍ତି, ଜ୍ଞାନର ସମନ୍ୱୟ କରିବା ଲକ୍ଷ୍ୟ ତାଙ୍କର ଉଲ୍ଲିଖିତ ପ୍ରଚେଷ୍ଟାର ମୂଲ୍ୟାୟନ କରିବା ।

ଓଡ଼ିଶାର ଭକ୍ତକବି ଜୟଦେବ ଆଚାର୍ଯ୍ୟ 'ଭକ୍ତ ଭାଗବତ ମହାତ୍ମ୍ୟ ଓ ଭକ୍ତି ବୈଭବ' ଗ୍ରନ୍ଥରୁ ଜଣାଯାଏ ଶ୍ରୀଧର ସ୍ୱାମୀଙ୍କ ଅପ୍ରକଟ ପରେ ତାଙ୍କର ପ୍ରଭାବ ଓଡ଼ିଶାବାସୀଙ୍କ ଉପରେ ଥିଲା ଓ ରେମୁଣାର କ୍ଷୀରଚୋରା ଗୋପୀନାଥଙ୍କ ଦ୍ୱାରା ବିଶେଷ ପ୍ରଭାବିତ ହେବା ସଙ୍ଗେ ସଙ୍ଗେ ଅଥର୍ବବେଦୀ ବ୍ରାହ୍ମଣମାନଙ୍କ ଦ୍ୱାରା ମଧ୍ୟ ପ୍ରଭାବିତ ହୋଇଥିଲେ । ନାଭାଜୀକୃତ ହିନ୍ଦୀ 'ଭକ୍ତମାଳାର' ବାର୍ତ୍ତିକ ପ୍ରକାଶରୁ ଜଣାଯାଏ ଯେ ଶ୍ରୀଧର ସ୍ୱାମୀ ପାଦ ଏକଦା ଜଣେ ଧନବାଦ ସଦାଚାରୀ

ଗୃହସ୍ଥ ଥିଲେ । ଆଗ୍ରାରୁ ଗୃହାଭିମୁଖୀ ସମୟରେ କିଛି ଠକ ତାଙ୍କ ପ୍ରାଣ ସଂହାର କରିବାକୁ ଉଦ୍ୟତ ହେଉଥିବା ସମୟରେ ଧନୁର୍ଦ୍ଧାରୀ ଶ୍ରୀ ରଘୁବୀର ସ୍ମରଣେ କରନ୍ତେ ରଘୁବୀର ତାଙ୍କୁ ତାଙ୍କ ଘର ପର୍ଯ୍ୟନ୍ତ ପହଞ୍ଚାଇଥିଲେ । ତତ୍‌ପରେ ତାଙ୍କ ମନରେ ବିଶ୍ୱାସ ଭକ୍ତିର ଉଦୟ ହୁଏ ଓ ବୈରାଗ ଜାତ ହେବାରୁ ମାତୃହରା ସଦ୍ୟ ଶିଶୁପୁତ୍ରକୁ ସେ ଗ୍ରାମସ୍ଥ ବ୍ୟକ୍ତିଗଣଙ୍କୁ ତାର ଲାଳନପାଳନରେ ଦାୟିତ୍ୱ ଦେଇ ଗୃହତ୍ୟାଗ କଲେ । ଉକ୍ତ ଶିଶୁ କାଳକ୍ରମେ ବିଖ୍ୟାତ 'ଭଞ୍ଜିକାବ୍ୟ' ଗ୍ରନ୍ଥର ରଚୟିତା ହେଲେ । ବଂଶଧର ଶ୍ରୀ ଲକ୍ଷ୍ମୀକାନ୍ତ ପତିଙ୍କ ତାଳପତ୍ରରେ ଲେଖା ଓଡ଼ିଆ ଭାଷାର ବହୁ ପୋଥି ବିଦ୍ୟମାନ ରହିଛି ।

ଶ୍ରୀଧର ସ୍ୱାମୀଙ୍କ ସନ୍ୟାସ ନାମ ଥିଲା ଯତି ଶ୍ରୀଧର ସ୍ୱାମୀ । ସେ ହରିହରଙ୍କୁ ଏକାତ୍ମା ଜାଣି ମଧ୍ୟ ଶ୍ରୀ ମାଧବଙ୍କୁ ହିଁ ସ୍ୱୟଂ ରୂପ ଭଗବାନ ବୋଲି ଜାଣିଥିଲେ । ମାୟାବାଦୀଗଣ ସବିଶେଷ ବ୍ରହ୍ମଙ୍କୁ ପରତତ୍ତ୍ୱ ବୋଲି ସ୍ୱୀକାର କଲେ ମଧ୍ୟ ଶ୍ରୀଧର ଶ୍ରୀକୃଷ୍ଣଙ୍କୁ ହିଁ ବ୍ରହ୍ମର ପ୍ରତିଷ୍ଠା ବା ଘନୀଭୂତ ବ୍ରହ୍ମ କହିଛନ୍ତି । ଅଦ୍ୱୈତବାଦୀଗଣ ଶ୍ରୀ ଭଗବାନଙ୍କର ବିଗ୍ରହ, ପାମ, ରୂପ, ଗୁଣ, ବିଭୂତି, ଧର୍ମ ଓ ପରିକର ଗନଙ୍କର ନିତ୍ୟତା ସ୍ୱୀକାର ନକଲେ ମଧ୍ୟ ଶ୍ରୀଧର ଶ୍ରୀବିଗ୍ରହର ସନାତନତ୍ୱ ଓ ଅପରିମେୟତ୍ୱାଦି ସ୍ଥାପନ କରିଅଛନ୍ତି । ପ୍ରଭୁ ଶବ୍ଦର ବ୍ୟାଖ୍ୟା ଅବସରରେ ଭଗବାନଙ୍କର ଅପ୍ରାକୃତିକ ଗୁଣ ନିଚୟର ପ୍ରତିପାଦନ କରିଅଛନ୍ତି ।

# ଶ୍ରୀ ଶ୍ରୀ ବଳଦେବ ବିଦ୍ୟାଭୂଷଣ

ତ୍ରିକାଳଦର୍ଶୀ ଭକ୍ତବତାର ଶ୍ରୀଳ ପ୍ରଭୁ ଶ୍ୟାମାନନ୍ଦ ରେମୁଣା ଆସି ଶ୍ରୀ ମନ୍ଦିର ପ୍ରାଙ୍ଗଣରେ ଛିଡ଼ା ହୋଇ ଭାବୀ ଅନୁଶିଷ୍ୟ ବେଦାନ୍ତଚାର୍ଯ୍ୟ ବୈଷ୍ଣବକୂଳ ମୁକୁଟମଣି ଉତ୍କଳଭୂଷଣ ଶ୍ରୀ ବଳଦେବ ବିଦ୍ୟାଭୂଷଣଙ୍କ ଆବିର୍ଭାବ ସୂଚନା କଲେ । ଉକ୍ତ ଦୈବୀବାଣୀ ପୂର୍ବକ ଅଷ୍ଟାଦଶ ଶତାବ୍ଦୀରେ ମୂର୍ତ୍ତି ପରିଗ୍ରହ କଲେ ବେଦାନ୍ତ ବିଶାରଦ ଶ୍ରୀ ବଳଦେବ ବିଦ୍ୟାଭୂଷଣ ରୂପକ । ସେ ଥିଲେ ନିଷ୍କଞ୍ଚନ ପରମ ଭାଗବତ । ବହୁ ଅମୂଲ୍ୟ ଗ୍ରନ୍ଥ ଲେଖି ମାନବ ଜାତିର ଓ ସର୍ବୋପରି ଶ୍ରୀମନ୍ ମହାପ୍ରଭୁ ପ୍ରବର୍ତ୍ତିତ ଗୌଡ଼ୀୟ ବୈଷ୍ଣବ ଧର୍ମର ମହୋପକାର କରିଯାଇଛନ୍ତି ।

ତାଙ୍କର ଭାଷ୍ୟ ହିଁ ତାଙ୍କୁ ଚାରି ସଂପ୍ରଦାୟର ବୈଷ୍ଣବଗଣଙ୍କ ମଧ୍ୟରେ ସଂଜୀବିତ କରିରଖିଛି ।

ବଳଦେବ ବିଦ୍ୟାଭୂଷଣଙ୍କ ଜନ୍ମସ୍ଥାନ ଓ ବଂଶ ପରିଚୟର ସଠିକତା ପ୍ରତିପାଦନ ହୋଇପାରି ନାହିଁ । ତତ୍କାଳ ପ୍ରଦେଶାନ୍ତର୍ଗତ ବାଲେଶ୍ୱର ଜିଲ୍ଲାର ପ୍ରସିଦ୍ଧ ତୀର୍ଥ କ୍ଷୀରଚୋରା ସନ୍ନିକଟ କୁକୁମଶୁଳି ଗ୍ରାମରେ ଜନ୍ମ ହୋଇଥିଲେ । ବର୍ତ୍ତମାନ ତାହା 'ବଳଭଦ୍ର ବାଡ଼ି' ନାମରେ ବିରାଜିତ । ପ୍ରଥମେ ସେ ଚିଲିକା ହ୍ରଦର ଅପର ପାର୍ଶ୍ୱରେ ବିଦ୍ୱଦ୍ ବସତିରେ ବ୍ୟାକରଣ, ବାକ୍ୟାଳଙ୍କାର, ଶସ୍ତ୍ର ଅଧ୍ୟୟନ ଓ ଦ୍ୱିତୀୟରେ ମହୀଶୂରରେ ବେଦାଧ୍ୟୟନ କଲେ । ତତ୍ତ୍ୱବାଦୀ ମାନଙ୍କ ମଠକୁ ଯାଇ ତତ୍ ସଂପ୍ରଦାୟଭୁକ୍ତ ହେଲେ । ତତ୍ପରେ ସନ୍ୟାସ ଗ୍ରହଣକରି ଶ୍ରୀ ପୁରୁଷୋତ୍ତମ କ୍ଷେତ୍ରସ୍ଥ ତଦାନୀନ୍ତନ ପଣ୍ଡିତ ମଣ୍ଡଳୀଙ୍କୁ ଶାସ୍ତ୍ର ଯୁଦ୍ଧରେ ପରାସ୍ତକରି ତତ୍ତ୍ୱବାଦୀ ମାନଙ୍କ ମଠକୁ ପ୍ରତ୍ୟାବର୍ତ୍ତନ କଲେ । ତତ୍ପରେ ରସିକ ମୁରାରୀଙ୍କ ପ୍ରଶିଷ୍ୟ କାନ୍ୟକୁବ୍ଜ୍ୱାବାସୀ ଶ୍ରୀରାଧା ଦାମଦୋରଙ୍କଠାରେ ଷଟ୍ ସନ୍ଦର୍ଭାଦି ଗ୍ରନ୍ଥ ଅଧ୍ୟୟନ କରି ତାଙ୍କର ଶିଷ୍ୟତ୍ୱ ଗ୍ରହଣ କଲେ । ତତ୍ପରେ ଶ୍ରୀଧାମ ନବଦ୍ୱୀପ ଦର୍ଶନକରି ଶ୍ରୀଧାମ ବବୃନ୍ଦାବନରେ ଉପସ୍ଥିତ ହେଲେ । ସେଠାରେ ଶ୍ରୀମଦ୍ ବିଶ୍ୱନାଥ ଚକ୍ରବର୍ତ୍ତୀଙ୍କଠୁ 'ଗୌଡ଼ୀୟ ଅଚିନ୍ତ୍ୟ ଭେଦାଭେଦଭାବ' ସମ୍ବନ୍ଧରେ ବିଶେଷ ଜ୍ଞାନ ହାସଲ କଲେ ଓ ସେଥିପାଇଁ ସର୍ବତ୍ର ଆତ୍ମନିୟୋଗ କଲେ ।

ତତ୍ପରେ ଜୟପୁର ରାଜଦରବାରରେ ଗୌଡ଼ୀୟ ସଂପ୍ରଦାୟ ସମ୍ବନ୍ଧରେ ଶ୍ରୀ ରାମାନୁଜ ସଂପ୍ରଦାୟ ସଙ୍ଗରେ ଏକ ବିରୋଧ ବେଦାନ୍ତ ଭାଗ୍ୟ ଜନିତ ଉପସ୍ଥିତ ହୁଅନ୍ତେ ବୃନ୍ଦାବନସ୍ଥ ଶ୍ରୀ ବିଶ୍ୱନାଥ ଚକ୍ରବର୍ତ୍ତୀଙ୍କ ନିକଟକୁ ସମ୍ବାଦ ପ୍ରେରଣ କଲେ । ଅତିଶୟ ବୃଦ୍ଧାବସ୍ଥା ହେତୁ ବିଶ୍ୱନାଥଜୀ ତାଙ୍କର ଶିଷ୍ୟ ଓ ଛାତ୍ର ଶ୍ରୀ ବଳଦେବଜୀଙ୍କୁ ଜୟପୁର ପଠାଇଲେ । ଶ୍ରୀ ବଳଦେବଜୀଙ୍କ ପ୍ରବଳ ପ୍ରତିଭା,ଅକାଟ୍ୟ ଯୁକ୍ତି ଓ ଦାର୍ଶନିକ ବିଚାର ବିଶ୍ଲେଷଣର ପ୍ରବଳ ପ୍ରବାହରେ ଶ୍ରୀ ସଂପ୍ରଦାୟୀ ପଣ୍ଡିତଗଣ କ୍ଷତବିକ୍ଷତ ଓ ପର୍ଯ୍ୟୁଦସ୍ତ ହୋଇ ପରାଜୟ ସ୍ୱୀକାର କଲେ । ସେ କହିଲେ - ଗୌଡ଼ୀୟ ସଂପ୍ରଦାୟ ପ୍ରବର୍ତ୍ତକ ଶ୍ରୀକୃଷ୍ଣ ଚୈତନ୍ୟ ମହାପ୍ରଭୁ ଶ୍ରୀମଦ୍

ଭଗବତଙ୍କୁ ହିଁ ଅତିକ୍ରମ ବେଦାନ୍ତଭାଷ୍ୟ ବୋଲି ସ୍ୱୀକାର କରିଛନ୍ତି ଓ ଷଟ୍ ସନ୍ଦର୍ଭ ତାହାର ପ୍ରମାଣ ।

ତତ୍‌ପରେ ଅତ୍ୟନ୍ତ ମ୍ରିୟମାଣ ହୋଇ ସେ ଶ୍ରୀ ଗୋବିନ୍ଦ ମନ୍ଦିରକୁ ଆସି ସାଷ୍ଟାଂଗ ପ୍ରଣିପାତ ପୂର୍ବକ ବନ୍ଦନା କରି ବ୍ୟଥିତ ହୃଦୟର ବ୍ୟଥା ଗୋବିନ୍ଦ ଜୀଉଙ୍କୁ ଜଣାଇଲେ । ରାତ୍ରି ଶେଷ ପ୍ରହରରେ ସ୍ୱପ୍ନାଦେଶ ହେଲା ନୂତନ ବେଦାନ୍ତ ଭାଷ୍ୟ ରଚନା କରିବାକୁ । ପୁଣି ଆଦେଶ ଦେଲେ 'କୁରୁ କୁରୁଁ' । ଏଥିରେ ସଂଶୟ ଦୂର ନହେବାରୁ ପୂର୍ବବତ ପଡ଼ିରହିଲେ ଓ ସ୍ୱପ୍ନାଦେଶ ହେଲା 'କୁରୁ ତବ ଭବିଷ୍ୟତ' । ପୁଣି ସଂଶୟାକୁଳ ହୋଇ ପଡ଼ି ରହିବାରୁ ଆଜ୍ଞା ହେଲା 'ଶ୍ରୀ ଗୋବିନ୍ଦଭାଷ୍ୟ' ଲେଖିବାକୁ । ତତ୍‌କ୍ଷଣାତ୍ ସେ ଗୋବିନ୍ଦ ପାଦପଦ୍ମ ଧ୍ୟାନକରି ଶ୍ରୀ ଗୋବିନ୍ଦ ଭାଷ୍ୟ ଲେଖିବାକୁ ଆରମ୍ଭ କରିଦେଲେ ଓ ଏକମାସ ଲାଗିଲା ସମାପ୍ତ ହେବାକୁ । ୧୭୦୬ଖ୍ରୀଷ୍ଟାବ୍ଦରେ ଜୟପୁରରେ 'ଗଲତା' ନାମକ ସ୍ଥାନରେ ଏହା ସମ୍ପୂର୍ଣ୍ଣତା ଲାଭ କଲା ।

'ଶ୍ରୀ ଗୋବିନ୍ଦ ଭାଷ୍ୟ' ବଳଦେବଜୀଙ୍କୁ ଚିର ଅମର କରିରଖିଛି ଓ ଯାବତ୍ ଜୀବନ ଭାରତବର୍ଷରେ ସଂସ୍କୃତ ଭାଷାରେ ସମାଜରେ ରହିଥିବ ତତ୍‌କାଳ ପର୍ଯ୍ୟନ୍ତ ଶ୍ରୀ ବଳଦେବ ବିଦ୍ୟାଭୂଷଣ - ବିଶ୍ୱଭୂଷଣ ହୋଇ ସଗୌରବରେ ଜୀବିତ ଥିବେ । ତତ୍‌ପରେ ଭାଷ୍ୟ ଗ୍ରନ୍ଥକୁ ଶ୍ରୀ ବଳଦେବଜୀ ରାମାନନ୍ଦୀ ପଣ୍ଡିତଗଣଙ୍କୁ ଦେଖାଇବାରୁ ସମସ୍ତେ ନିର୍ବାକ୍ ହେଲେ । ପଣ୍ଡିତଗଣ ଶ୍ରୀ ବଳଦେବଙ୍କୁ 'ବିଦ୍ୟାଭୂଷଣ' ଉପାଧି ପ୍ରଦାନ କଲେ ଶ୍ରୀ ସଂପ୍ରଦାୟତ ପଣ୍ଡିତଗଣ ତାଙ୍କର ଶିଷ୍ୟତ୍ୱ ଗ୍ରହଣ ପାଇଁ ମନ ବଳାଇଲେ ମାତ୍ର ସେ ସ୍ୱୀକୃତି ଦେଲେ ନାହିଁ । ଗୁରୁ ତାଙ୍କୁ ଷଟ୍ ସନ୍ଦର୍ଭର ଭାଷ୍ୟ ଲେଖିବାକୁ ଉପଦେଶ ଦେଲେ । ଅତଃପର ଗୁରୁଙ୍କର ନିତ୍ୟଲୀଳାରେ ପ୍ରବେଶ କରନ୍ତେ ଶ୍ରୀମଦ୍ ବଳଦେବ ବିଦ୍ୟାଭୂଷଣ ପାଦ ଗୌଡ଼ୀୟ ବୈଷ୍ଣବ ସଂଘର ପାତ୍ରରାଜ ରୂପେ ଅଧିଷ୍ଠିତ ହେଲେ । ଶ୍ରୀ ବଳଦେବ ବିଦ୍ୟାଭୂଷଣପାଦ ପରବର୍ତ୍ତୀ କାଳରେ ଶ୍ରୀ ଗୋବିନ୍ଦ ଦାସ ନାମରେ ପରିଚିତ ହୁଅନ୍ତି ପରମବିରକ୍ତି ଶ୍ରୀ ପିତାମ୍ବର ଦାସଙ୍କ ନିକଟରୁ ବେଶାଶ୍ରୟ ଗ୍ରହଣକରି ।

ଶ୍ରୀ ଗୋବିନ୍ଦଭାଷ୍ୟ ସମେତ ଅଠତିରିଶଟି ଅମୂଲ୍ୟ ଗ୍ରନ୍ଥ ପ୍ରଣୟନ କରି ସେ ଚିର ଭାସ୍ୱର ରହିଛନ୍ତି । କଥିତ ଅଛି, ଶ୍ରୀଚୈତନ୍ୟ ପାର୍ଷଦ ଶ୍ରୀ ଗୋପୀନାଥ

ମିଶ୍ର ଯେ'କି ସାର୍ବଭୌମଙ୍କ ସହିତ ଶ୍ରୀମନ୍ ମହାପ୍ରଭୁଙ୍କର ଶ୍ରୀମୁଖ ନିଃଶୃତ ବେଦାନ୍ତ ସୂତ୍ର ଭାଷ୍ୟ ଶ୍ରବଣ କରନ୍ତି, ସେହି ବ୍ରହ୍ମ ଗୌଡ଼ୀୟ ସଂପ୍ରଦାୟର ଭାଷ୍ୟକାର ରୂପେ ପରେ ଶ୍ରୀ ବଳଦେବ ବିଦ୍ୟାଭୂଷଣ ରୂପେ ଆର୍ବିଭୂତ ହୋଇଥିଲେ । ସେ ବୈଦିକ ଓ ବୈଦାନ୍ତିକ ପାଣ୍ଡିତ୍ୟ ଓ ଅପାର ବ୍ରହ୍ମଧୀଷଣାର ପରିଚୟ ଦେଇ ଶ୍ରୀମନ୍ ମହାପ୍ରଭୁଙ୍କ ପ୍ରବର୍ତ୍ତିତ ଓ ଶ୍ରୀ ଶ୍ରୀ ଜୀବ ଗୋସ୍ୱାମୀ କର୍ତ୍ତୃକ ବ୍ୟାଖ୍ୟାରେ 'ଅଚିନ୍ତ୍ୟ ଭେଦଭାବବାଦ'କୁ ସ୍ୱୀକାର କରନ୍ତି ବେଦାନ୍ତ ଦର୍ଶନର ଅନ୍ୟାନ୍ୟ ମତାମତବାଦକୁ ନିରସ୍ତ କରି ।

# ଶ୍ରୀ ଶ୍ରୀ ରସିକାନନ୍ଦ ଗୋସ୍ୱାମୀ

ଓଡ଼ିଶାର ସୌଭାଗ୍ୟ ଶୈଳରେ ଆଜ୍ଞାନତମୋ ନାଶକ ଭାସ୍କର ରୂପୀ ଶ୍ରୀ ଶ୍ରୀ ରସିକାନନ୍ଦ ଦେବଙ୍କର ଶୁଭ ଅଭ୍ୟୁଦୟ ହୁଏ ଖ୍ରୀ. ୧୫୯୦, କାର୍ତ୍ତିକ ୧୮, ରବିବାର (ଅଧୁନା ମେଦିନପୁର) ବାଲେଶ୍ୱର ଜିଲ୍ଲାର ସୁବର୍ଣ୍ଣରେଖା ନଦୀର ଶାଖାନଦୀ ବଳଙ୍ଗ ନଦୀ ନିକବର୍ତ୍ତୀ ରୋହିଣୀ ନାମକ ଗ୍ରାମରେ ଶିଷ୍ଟ କରଣ ବଂଶୀୟ ଜମିଦାର ଶ୍ରୀ ଅଚ୍ୟୁତାନନ୍ଦ ଦେବ ଓ ଭବାନୀଦେବୀଙ୍କ ଗୃହରେ । ବାଲ୍ୟ ନାମ ଥିଲା ମୁରାରୀ ।

ରସିକମୁରାରୀ ବାଲ୍ୟାବସ୍ଥାରୁ କୃଷ୍ଣ ଭକ୍ତ ଥିଲେ । (ତାଙ୍କର ହରେକୃଷ୍ଣ ମହାମନ୍ତ୍ର) ଦାତ୍ରୀ ଥିଲେ ଦୟାଲ ଦାସୀ ) ଶିକ୍ଷକ ବାସୁଦେବଙ୍କଠୁଁ ବିଦ୍ୟା ଶିକ୍ଷା, ଜଗନ୍ନାଥ ମିଶ୍ର ଓ ହରିବୁବେଙ୍କଠୁଁ ଭାଗବତ ଶିକ୍ଷା କରିଥିଲେ ।

ତାଙ୍କର ପତ୍ନୀ ଥିଲେ ମେଦିନପୁରର ହିଜିଳିର ଅଧିପତି ଶ୍ରୀ ବଳଦେବ ଦେବଙ୍କ କନ୍ୟା ଇଚ୍ଛାଦେବୀ । ବାପାଙ୍କ ଘଣ୍ଟଶୀଳା ଜମିଦାର ଘରେ ସ୍ୱପ୍ନାଦିଷ୍ଟ ହୋଇ ରସିକମୁରାରୀ ପ୍ରଭୁ ଶ୍ୟାମନନ୍ଦ ଅପେକ୍ଷାରେ ଥିଲେ ଓ ତାଙ୍କ ଠାରୁ କୃଷ୍ଣ ଦୀକ୍ଷା ଗ୍ରହଣ କରି ତାଙ୍କୁ ଗୁରୁ କଲେ । ରସିକମୁରାରୀ ବୃନ୍ଦାବନକୁ ତୀର୍ଥ ଯାଆନ୍ତେ ଓ ପ୍ରତ୍ୟାଗମନ କରି ସ୍ତ୍ରୀ ଓ ପିଲାଙ୍କୁ ଯା'ମାନେ ହଇରାଣ କରୁଥିବା ଜାଣିପାରି ସେମାନଙ୍କୁ ଆଣି ଗୋପୀବଲ୍ଲଭପୁରରେ ରଖିଥିଲେ । ଗୁରୁଙ୍କ ନିର୍ଦ୍ଦେଶମତେ ରସିକାନନ୍ଦ ମୟୂରଭଂଜକୁ ଧର୍ମ ପ୍ରଚାରରେ ଯାଇ ସେଠାରେ

ରାଜା ବୈଦ୍ୟନାଥ ଭଞ୍ଜଙ୍କୁ ଶାସ୍ତ୍ର ଆଲୋଚନାରେ ପରାସ୍ତ କରନ୍ତେ ରାଜା ଓ ତାଙ୍କର ଭାଇ ତାଙ୍କ ଠାରେ ଦୀକ୍ଷା ଗ୍ରହଣ କଲେ ଓ ଏକ କୃଷ୍ଣ ବିଗ୍ରହ ପ୍ରାପ୍ତ ହେଲେ । ଶ୍ରୀ ଶ୍ୟାମାନନ୍ଦ ଉକ୍ତ ବିଗ୍ରହର ନାମ 'ଶ୍ରୀଗୋପୀବଲ୍ଲଭ ରାୟ' ରଖିଲେ । ବର୍ତ୍ତମାନ ଉକ୍ତ ବିଗ୍ରହ ଗୋପୀବଲ୍ଲଭପୁରରେ ରାଧାରାଣୀଙ୍କ ସହ ପୂଜା ପାଉଛନ୍ତି ।

ବଣ ମଧ୍ୟରେ ଶିଷ୍ୟଙ୍କ ଗ୍ରହଣରେ ଯାଉଥିବା ସମୟରେ ଏକ ମତ୍ତ ଓ ଦୁର୍ଦ୍ଦାନ୍ତ ହସ୍ତୀକୁ ସେ କୃଷ୍ଣ ମନ୍ତ୍ରରେ ଦୀକ୍ଷିତ କରିଥିଲେ ଓ ତାହାରି ମାଧ୍ୟମରେ ଅନ୍ୟ ବଣୁଆ ହସ୍ତୀ ମାନଙ୍କୁ ଆଣି ବନ୍ଦୀ ଘରେ ରଖି ପାରୁଥିଲେ । ୨୦୦ ଭକ୍ତଙ୍କୁ ନବାବିଷ୍ଟ କରି ନଦୀରେ ଯାଉଥିବା ସମୟରେ ତାହା ଭାରସାମ୍ୟ ହରାଇ ଓଲଟି ପଡ଼ିଲା, ମାତ୍ର ତାଙ୍କ ନିର୍ଦ୍ଦେଶରେ ହରିବୋଲ ଧ୍ୱନିରେ ଭକ୍ତମାନେ ବଞ୍ଚିଗଲେ । ଆହୁରି ମଧ୍ୟ ଗ୍ରୀଷ୍ମଦିନେ ତାଙ୍କ ଆଦେଶରେ ଜଳର ଧାର ଘାଟ ପାଖକୁ ଆସୁଥିଲା ଓ ବଡ଼ ବର୍ଷା ପବନ ମଧ୍ୟ ଥମି ଯାଉଥିଲା । ଗୁରୁଙ୍କ ନିର୍ଦ୍ଦଶକ୍ରମେ ମୟୂରଭଞ୍ଜର ରାସ ଉତ୍ସବ ସମାପନ କରି ସେ ଶିଷ୍ୟଙ୍କ ଗହଣରେ ଉତ୍କଳକୁ ହରିନାମ ପ୍ରଚାର ନିମନ୍ତେ ଆସିଲେ । ମାତ୍ର ଏଠାକାର ସୁବେଦାର ଆହମ୍ମଦ ବେଗ୍‌ଙ୍କ ଆଦେଶକ୍ରମେ ବଣରେ ଥିବା ମତ୍ତ ହସ୍ତୀକୁ ବଶ କରି ନିଜର କ୍ଷମତା ଜଣାଇଥିଲେ । ରାସଗୋବିନ୍ଦପୁରରେ ବାଲିଆର ଦୁର୍ଦ୍ଦାନ୍ତ ଓ ଉଦଣ୍ଡ ଜମିଦାରଭୂୟାଁକୁ ଦୀକ୍ଷା ଦେଇଥିଲେ । ସେ ନୀଳାଚଳ ଯିବା ରାସ୍ତାରେ ରେମୁଣା ମନ୍ଦିରରେ ପହଞ୍ଚନ୍ତେ ଗୋପୀନାଥଙ୍କୁ ନଦେଖି ମ୍ରିୟମାଣ ହୁଅନ୍ତେ ସେଇ ରାତ୍ରିରେ ଗୋପୀନାଥ ତାଙ୍କୁ ସ୍ୱପ୍ନାଦେଶ କଲେ ଯେ, ଲୋକେ ତାଙ୍କୁ ଚଣ୍ଡୀଦେବୀ ଆଖ୍ୟା ଦେଇ ପୂଜା କରୁଥିବାରୁ ସେମାନଙ୍କଠାରୁ ତାଙ୍କୁ ଉଦ୍ଧାରକରି ପୂଜାଅର୍ଚ୍ଚନା କରିବା ପାଇଁ । ପରଦିନ ମୂର୍ତ୍ତି ଉଦ୍ଧାର ହୋଇ ବାରମ୍ବାର ଧୌତ ହେବାରୁ ଗୋପୀନାଥଙ୍କ ବିଗ୍ରହ ବୋଲି ଜଣାଗଲା ଓ ପୁନଃ ପ୍ରତିଷ୍ଠା କରାଗଲା । ମୁରାରୀଙ୍କ ଆଦେଶମତେ ଶିଷ୍ୟ ମୟୂରଭଞ୍ଜର ରାଜା ରଘୁନାଥ ଭଞ୍ଜ ବର୍ତ୍ତମାନର ଗୋପୀନାଥ ମନ୍ଦିର ନିର୍ମାଣ କରିଥିଲେ । କେନ୍ଦୁଝର ରାଜା, ତିହିଡ଼ି ସାମନ୍ତ ରାଜା ଓ ବାଲେଶ୍ୱରର କେତେକ ଜମିଦାର ମଧ୍ୟ ଏ କାମରେ ସାହାଯ୍ୟ କରି, ବୃନ୍ଦାବନରୁ ଶ୍ରୀଗୋବିନ୍ଦ ଜୀଉଙ୍କ ବିଗ୍ରହ ଆଣି ସ୍ଥାପନ କରିସାରି ପୁରୀ ଯାଇଥିଲେ ।

ଥରେ ପୁରୀରେ ରଥଯାତ୍ରା ସମୟରେ ରସିକାନନ୍ଦଙ୍କର ବିଳମ୍ବ ଜାଣିପାରି ଜଗନ୍ନାଥଙ୍କର ରଥ ଚାଲିଲା ନାହିଁ । ଦୈବୀ ଆଦେଶ ପାଇ ଗଜପତି ମହାରାଜ

ମୁରାରୀଙ୍କୁ ଅଠରନଳାଠାରେ ସମ୍ବର୍ଦ୍ଧନା କଲେ ଓ ତାଙ୍କର କର ସ୍ପର୍ଶରେ ରଥ ଚାଲିଲା ଓ ମହାରାଜଙ୍କଠୁଁ ପ୍ରାୟ 'ଫୁଲତୋଡ଼ା' ସ୍ଥାନ ବର୍ତ୍ତମାନର କୁଞ୍ଜମଠ । ଶ୍ରୀଗୋପୀନାଥଙ୍କର ଗଜପତି ମହାରାଜଙ୍କୁ ସ୍ୱପ୍ନାଦେଶକ୍ରମେ ଶ୍ରୀ ଶ୍ରୀ କ୍ଷୀରଚୋରା ଗୋପୀନାଥଙ୍କର ଦାୟିତ୍ୱ ମହାରାଜାଙ୍କୁ ପ୍ରଦାନ କରିଥିଲେ ।

ଖ୍ରୀ. ୧୬୫୨ରେ ଫାଲଗୁନ ଶିବ ଚତୁର୍ଦ୍ଦଶୀ ପରି ପ୍ରତିପଦରେ ଗୋସ୍ୱାମୀଙ୍କ ୬୨ବର୍ଷ ବୟସରେ ନିଜର ଆସନ୍ନ ମୃତ୍ୟୁ ଜାଣିପାରି ସେ ଭକ୍ତମାନଙ୍କ ଗହଣରେ ରେମୁଣା ଆସିଥିଲେ । ରାସ୍ତାରେ ଏକ କଣ୍ଟା ଗୋଡ଼ରେ ଫୁଟିବା ଯୋଗୁଁ ଅସୁସ୍ଥ ହୋଇ ପଡ଼ିଥିଲେ । ଗୋପୀନାଥଙ୍କ ମନ୍ଦିରରେ ପ୍ରବେଶକରି ଭିତରପଟୁ କବାଟ ବନ୍ଦ କରିଦେଇ ପ୍ରଭୁଙ୍କ ଶ୍ରୀଅଙ୍ଗରେ ଲୀନ ହୋଇ ଯାଇଥିଲେ । ତାଙ୍କ ସହିତ ଆସିଥିବା ଛଅଜଣ ବାହକ ଓ ସେବାକାରୀ, ଗୋସ୍ୱାମୀଙ୍କ ଅନ୍ତର୍ଦ୍ଧାନରେ ମ୍ରିୟମାଣ ହୋଇ ଶେଷ ନିଶ୍ୱାସ ତ୍ୟାଗ କଲେ । ତାଙ୍କର ଆଦେଶ ପୂର୍ବକ ସେ ବ୍ୟବହାର କରିଥିବା ପଲଙ୍କ, କଠଉ, ତକିଆ, ବସନଭୂଷଣ ଓ ତାଙ୍କର ବିଗ୍ରହ ତଥା ଛଅଜଣ ସେବକଙ୍କ ସମାଧି ଏବେ ମଧ୍ୟ ମନ୍ଦିର ବେଢ଼ାରେ ଗୋଟିଏ କୋଠରୀରେ ପୂଜାପାଉଛି । ସେହିଦିନଠାରୁ ଫାଲଗୁନ ଗୋବିନ୍ଦ ଦ୍ୱାଦଶୀ ପର୍ଯ୍ୟନ୍ତ ୧୨ଦିନ ଧରି ଏକ ମହୋତ୍ସବ ଗୋପୀନାଥଙ୍କ ମନ୍ଦିରରେ ପାଳିତ ହୋଇ ଆସୁଛି । ଗୋସ୍ୱାମୀଙ୍କ ଅନ୍ତର୍ଦ୍ଧାନ ପରେ ଶ୍ରୀ ନିଦ୍ରା ଠାକୁରାଣୀ ମା' ଗୋସ୍ୱାମିନୀ ନାମ୍ନୀ ଜଣେ ସ୍ତ୍ରୀ ଲୋକ କିଛିଦିନ ଶ୍ରୀ ଶ୍ରୀ କ୍ଷୀରଚୋରା ଗୋପୀନାଥଙ୍କ ମନ୍ଦିର ଅଧିକାରିଣୀ ଥିଲେ ।

# ଭକ୍ତ ଶ୍ୟାମାନନ୍ଦ

ମର୍ତ୍ତ୍ୟରେ ବ୍ରଜଧାମ ବୃନ୍ଦାବନ ଶ୍ରୀକୃଷ୍ଣଙ୍କ ଲୀଳାକ୍ଷେତ୍ର ଏବଂ ନୀଳାଚଳ(ପୁରୀ) ବଦ୍ରିକା, ଦ୍ୱାରିକା, ରାମେଶ୍ୱର । ଏହି ଚତୁର୍ଥଧାମ ଯୁଗେ ଯୁଗେ ପ୍ରଭୁଙ୍କର ଲୀଳାରେ କ୍ଷେତ୍ର ରୂପେ ମହିମା ପ୍ରକାଶ କରୁଅଛନ୍ତି । ପଞ୍ଚଦଶ ଶତାବ୍ଦୀର ଶେଷକୁ ଦିଲ୍ଲୀରେ ବିଧର୍ମୀ ମୋଗଲମାନଙ୍କ ରାଜତ୍ୱ ଓ କଳିଙ୍ଗକୁ ଲାଗି ବଙ୍ଗ

(ଗୌଡ଼ଦେଶ)ରେ ଆଫଗାନ୍ ମାନଙ୍କ ଶାସନ ସମୟରେ ହିନ୍ଦୁଧର୍ମର ପୂଜା ଆରାଧନାରେ ବାଧା ସୃଷ୍ଟି ହୋଇଥିଲା । ଦେଶର ଧର୍ମ ସଂସ୍ଥାପନା ପାଇଁ ଓ ହିନ୍ଦୁଧର୍ମର ରକ୍ଷା ପାଇଁ ଗୋଲକବିହାରୀ ବିଷ୍ଣୁଙ୍କ ଅଂଶରୁ ଶ୍ରୀଚୈତନ୍ୟ ମହାପ୍ରଭୁ ଧରାରେ ଅବତୀର୍ଣ୍ଣ ହେଲେ । ତାଙ୍କର ସାହାଯ୍ୟାର୍ଥେ ଜନ୍ମିଥିବା ପାର୍ଷଦଗନଙ୍କ ମଧ୍ୟରୁ ଶ୍ୟାମାନନ୍ଦପ୍ରଭୁ ଥିଲେ ଅନ୍ୟତମ ।

ଶ୍ରୀମଦ୍ ଅଦ୍ୱୈତବାଦ ଥିଲେ ଶ୍ୟାମାନନ୍ଦ ପ୍ରଭୁ । ସେ ଓ ତାଙ୍କର ପ୍ରିୟତମ ଶିଷ୍ୟ ଶ୍ରୀ ରସିକାନନ୍ଦ ପ୍ରଭୁଙ୍କୁ ଶ୍ରୀବୃନ୍ଦାବନ ଓ ନବଦ୍ୱୀପ ଯୋଗପୀଠରେ ନିତ୍ୟ ଲୀଳାସ୍ଥଳୀ ମଞ୍ଜରୀ ସ୍ୱରୂପ ପ୍ରକାଶ ଓ ଶ୍ୟାମାନନ୍ଦୀ ବୈଷ୍ଣବ ସଂପ୍ରଦାୟର ବୈଶିଷ୍ଟ୍ୟରେ ଶ୍ରୀଦେବାଳୟ ସମ୍ମୁଖରେ ସଂକୀର୍ତ୍ତନ ସମୟରେ ବାମାବର୍ତ୍ତ ପରିବର୍ତ୍ତେ ଦକ୍ଷିଣାବର୍ତ୍ତ ପ୍ରଦକ୍ଷିଣ ପ୍ରଭୃତି ନବଧା ଭକ୍ତିର ଯାଜନ ବିଶ୍ୱବାସୀ ବୈଷ୍ଣବଜନଙ୍କର ଆଚାର ମାଧ୍ୟମରେ ବିଶ୍ୱବନ୍ଦିତ ହୋଇ ରହିଛନ୍ତି । ଖ୍ରୀ. ୧୫୩୫ରେ କଲକତାର ଧାରେନ୍ଦା ବାହାଦୁର ଗ୍ରାମରେ ପବିତ୍ର ଚୈତ୍ର ମଧୁ ପୂର୍ଣ୍ଣିମାରେ ଶ୍ୟାମାନନ୍ଦଙ୍କର ଜନ୍ମ । ପିତା ଶ୍ରୀକୃଷ୍ଣ ମଣ୍ଡଳ ଓ ମାତା ଦୁତିକା ଦେବୀ । ବାଲ୍ୟନାମ ଥିଲା ଦୁଃଖିଆ । ବାଲ୍ୟାବସ୍ଥାରୁ ସେ ଭକ୍ତିଶାସ୍ତ୍ର ଅଧ୍ୟୟନ ଓ ପ୍ରଭୁଙ୍କୁ ଧ୍ୟାନ କରୁଥିଲେ । ଖ୍ରୀ. ୧୫୫୪ ଫାଲଗୁନ୍ ମାସରେ ଶ୍ରୀ ଶ୍ରୀ ହୃଦୟ ଚୈତନ୍ୟଙ୍କଠୁଁ ହରିନାମ ମହାମନ୍ତ୍ର ଦୀକ୍ଷା ଗ୍ରହଣ କଲେ, ଗୁରୁ ନାମ ରଖିଲେ ଦୁଃଖକୃଷ୍ଣ ଦାସ । ୮ବର୍ଷ କାଳ ଭାରତରେ ବିଭିନ୍ନ ତୀର୍ଥ ଭ୍ରମଣ ପୂର୍ବକ ଖ୍ରୀ. ୧୫୬୨ରେ ସ୍ୱଗୃହ ପ୍ରତ୍ୟାଗମନ କରନ୍ତେ ତାଙ୍କର ୧ମ ବିବାହ ସମ୍ପନ୍ନ ହେଲା ।

କିଛିଦିନ ଉତ୍ତାରୁ ଗୁରୁଦେବଙ୍କ ଦର୍ଶନାର୍ଥେ ଯାଇ ତାଙ୍କର ଆଦେଶ ପୂର୍ବକ ବୃନ୍ଦାବନ ଗଲେ ଓ ଶ୍ରୀ ଜୀବଗୋସ୍ୱାମୀଙ୍କ ନିକଟରେ ଶ୍ରୀନିବାସ ଓ ନରୋତ୍ତମ ନାମ ବାଳକ ଦ୍ୱୟଙ୍କ ସହିତ ଆଶ୍ରମରେ ରହିଲେ । ଜୀବଗୋସ୍ୱାମୀଙ୍କ ଆଦେଶକ୍ରମେ ପ୍ରଥମେ ନିକୁଞ୍ଜ ଓ ସେବା କୁଞ୍ଜସ୍ଥଳୀ ମାର୍ଜନାରତ ସମୟରେ ଶ୍ରୀରାଧାଙ୍କର ବାମ ପାଦର ନୂପୁର ପାଇଥିଲେ । ସଖୀ ଲଳିତା ତାଙ୍କ ଲଲାଟରେ ନୂପୁର ପାଇଥିଲେ । (ସଖୀ ଲଳିତା ତାଙ୍କ ଲଲାଟରେ ନୂପୁର ଚିହ୍ନଦେଇ ନାମ ରଖିଲେ ଶ୍ୟାମାନନ୍ଦ ଓ ସଖୀ ବିଶିଖା ରଖିଲେ କନକମଞ୍ଜରୀ ଓ ଜୀବଗୋସ୍ୱାମୀଙ୍କ ନାମଦେଲେ ଶ୍ୟାମାନନ୍ଦ ।) ସେ ଦୁଇଟି ବାଘକୁ ହରିନାମ ଦୀକ୍ଷା ଦେଇଥିଲେ ।

ବୃନ୍ଦାବନର ଶ୍ରୀ ଶ୍ରୀ ମଦନଗୋପାଳଙ୍କ ସ୍ୱପ୍ନାଦେଶ ପୂର୍ବକ ରସିକାନନ୍ଦଙ୍କୁ ଶ୍ୟାମାନନ୍ଦ ଶିଷ୍ୟ ରୂପେ ଗ୍ରହଣ କଲେ । ରସିକାନନ୍ଦଙ୍କ ବନ୍ଧୁ ଦାମୋଦର ପଣ୍ଡିତଙ୍କ ପରାସ୍ତ ପୂର୍ବକ ସପରିବାର ତାଙ୍କର ଶିଷ୍ୟତ୍ୱ ଗ୍ରହଣ କଲେ । ଗୌଡ଼ୀୟ ଦେଶର ରାଜା ବୀର ହାମ୍ବାର ଶିଷ୍ୟ ଥିଲେ । ତାଙ୍କର ୧୩ଜଣ ଶିଷ୍ୟ ମଧ୍ୟରୁ ଜଣେ ନାରୀ ଶିଷ୍ୟା ଥିଲେ । ରସିକାନନ୍ଦ ଓ ଦାମୋଦରଙ୍କୁ ସେ ହରିନାମ ଓ ଭକ୍ତିଧର୍ମ ପ୍ରଚାର ପାଇଁ ଆଦେଶ ଦେଇଥିଲେ । ପ୍ରଭୁ ଶ୍ୟାମାନନ୍ଦ ଜୀବନର ଶେଷ ଦଶାରେ ନିଜର ୩ପତ୍ନୀଙ୍କୁ ଏକାଠି କରି କୃଷ୍ଣ ନାମ କୀର୍ତ୍ତନରେ କିଛିଦିନ କଟାଇଥିଲେ । ହରିପ୍ରେମରେ ରହି ଶରୀରରେ ସାତ୍ତ୍ୱିକ ବିକାର ଦେଖାଯାଇଥିଲା ।

ଶ୍ୟାମସୁନ୍ଦରପୁରରେ ନିଜର ଗୁରୁଦେବ ଶ୍ରୀ ହୃଦୟଚନ୍ଦନ ଠାକୁରଙ୍କର ଆରାଧନା ମହୋତ୍ସବ ଶେଷ ହୁଅନ୍ତେ ପ୍ରଭୁ ଶ୍ୟାମାନନ୍ଦ ଗୋବିନ୍ଦପୁରକୁ ଗଲେ । ନିଜର ଅନ୍ତିମ ସମୟ ଆଗତ ପ୍ରାୟ ଜ୍ଞାତ ପୂର୍ବକ ରସିକାନନ୍ଦଙ୍କୁ ନିକଟରେ ବସାଇ ଉତ୍କଳରେ ପ୍ରଭୁଙ୍କ ମହିମା ପ୍ରଚାର ଓ କୀର୍ତ୍ତନର ଇଚ୍ଛା ଜଣାଇବାରୁ ସେମାନେ ନୃସିଂହପୁରକୁ ଆସିଲେ । ଦୀର୍ଘ ୪ମାସ ରୋଗ ଶଯ୍ୟାରେ ପଡ଼ି ତାଙ୍କ ସ୍ୱାସ୍ଥ୍ୟର ଉନ୍ନତି ହେଲା ନାହିଁ । ସେଠାରୁ କାନପୁରକୁ ଯାତ୍ରା କଲେ ଓ ତତ୍‌ପରେ ରେମୁଣାରେ ଶ୍ରୀ କ୍ଷୀରଚୋରା ଗୋପୀନାଥ ଶ୍ରୀବିଗ୍ରହ ଦର୍ଶନକରି ସେଠାରେ କିଛିଦିନ ଅବସ୍ଥାନ କଲେ ଓ ନୃସିଂହପୁର ଗଲେ । ଖ୍ରୀ. ୧୫୫୨ ପବିତ୍ର ଦେବସ୍ନାନ ପୂର୍ଣ୍ଣିମା ପର ପ୍ରତିପଦ ତିଥିରେ ପ୍ରଭୁ ନୃସିଂହପୁର ଗ୍ରାମରେ ଶ୍ରୀ ଉଦଣ୍ଡ ରାୟ ଭୂୟାଁଙ୍କ ଗୃହରେ ଶିଷ୍ୟମାନଙ୍କ ସଂକୀର୍ତ୍ତନରତ ପୂର୍ବକ ଅପ୍ରକଟ ଲୀଳା ସମ୍ବରଣ କଲେ । ପ୍ରଭୁଙ୍କର ବିଶିଷ୍ଟ ଦ୍ୱାଦଶ ଶିଷ୍ୟଙ୍କଠାରୁ ଦ୍ୱାଦଶ ଶାଖାର ଉଦ୍ଭବ ହେଲା । ଏମାନଙ୍କର ମଧ୍ୟରେ ଶ୍ରେଷ୍ଠ ଥିଲେ ରସିକାନନ୍ଦ ଦେବଗୋସ୍ୱାମୀ । ସୁବର୍ଣ୍ଣରେଖା ତୀର ଦେଶର ଶ୍ରୀ ଗୋପୀବଲ୍ଲଭପୁରରେ ଶ୍ୟାମାନନ୍ଦୀ ସମ୍ପ୍ରଦାୟରେ ପ୍ରଧାନ କେନ୍ଦ୍ର ସ୍ଥାପନ ପୂର୍ବକ ଓଡ଼ିଶାରେ ଧର୍ମ ଓ ସଂସ୍କୃତି କ୍ଷେତ୍ରରେ ଦୀର୍ଘକାଳ ଧରି ବିସ୍ତାର କରି ଚାଲିଅଛି ।

ପ୍ରଭୁ ଶ୍ୟାମାନନ୍ଦ କେବଳ ଯେ ଧର୍ମ ପ୍ରଚାରକ ଥିଲେ ତା ନୁହେଁ, ସେ ବିଖ୍ୟାତ ଗାୟକ ଓ କବି ଥିଲେ ଏବଂ ବଂଶୀବାଦନ ମଧ୍ୟ କରୁଥିଲେ ।

●●●

# ପଞ୍ଚମ ଅଧ୍ୟାୟ

## ସପ୍ତଶରା ନଦୀ

ତ୍ରେତା ଯୁଗରେ ପ୍ରଭୁ ଶ୍ରୀରାମଚନ୍ଦ୍ର ପିତା ଦଶରଥଙ୍କର ପ୍ରତିଜ୍ଞା ପାଳନାର୍ଥେ ସ୍ତ୍ରୀ ସୀତାଦେବୀ ଓ ଅନୁଜ ଲକ୍ଷ୍ମଣଙ୍କୁ ନେଇ ଯେତେବେଳେ ବନବାସ ଲାଗି ଅନିର୍ଦ୍ଦିଷ୍ଟ ପଥରେ ଯାତ୍ରା କଲେ, ସେତେବେଳେ ପ୍ରଥମେ ଯାଇ ବିଚିତ୍ର ଚିତ୍ର ପରିପୂର୍ଣ୍ଣ ଚିତ୍ରକୂଟ ପର୍ବତରେ ଉପନୀତ ହେଲେ । ଏକଦା ବର୍ଷା ଋତୁରେ ପ୍ରଚଣ୍ଡ ଝଡ଼ବୃଷ୍ଟି ନିଦର୍ଶନ ପୂର୍ବକ ସୀତାଦେବୀ ଭୟଭୀତ ହୋଇ ଜୈମିନୀ ମୁନିଙ୍କର ନାମ ନେଉଥିବା ଶୁଣି ରାମଚନ୍ଦ୍ର ତାଙ୍କୁ ଆଶ୍ୱସନା ଦେଇଥିଲେ । ପୁଣି କିଛିକ୍ଷଣପରେ ବର୍ଷା ଥମିଗଲା ପରେ ତତ୍ରସ୍ଥ ମୁନିଗଣ ଆଶ୍ରମରୁ ଓ ଧେନୁଗଣ ନବୀନ ତୃଣ ଲୋଭରେ ଏଣେ ତେଣେ ବୁଲୁଥିବାର ଦେଖି ରାମଚନ୍ଦ୍ର ହସିବାକୁ ଲାଗିଲେ ଏବଂ ଏହାହିଁ ପ୍ରଭୁଙ୍କର ଭାବୀ ଲୀଳା ବହନ କରୁଛି ବୋଲି ମାତା ସୀତାଙ୍କୁ କହିଲେ ।

ପ୍ରଭୁ ଯେତେବେଳେ ଦ୍ୱାପର ଯୁଗରେ ଅଭିନ୍ନ ଗୋଲକ ବ୍ରଜଧାମସ୍ଥ ଗୋକୁଳରେ ନନ୍ଦ ଯୋଶଦାଳୟରେ ଅବତୀର୍ଣ୍ଣ ହେବେ ଓ ସୀତାଦେବୀ ମଧ ବର୍ଷନାଧିପତି ବୃଷଭାନୁ କାର୍ତ୍ତିଦାଦେବୀଙ୍କ ଆଳୟରେ ପ୍ରକାଶିତ ହେବେ, ସେତେବେଳେ ଏହିରୂପ ଧେନୁଗଣଙ୍କ ମଧ୍ୟରେ ଗୋଚାରଣ ଲୀଳାରେ ଅବଧାରଣା କରିବେ । ଉକ୍ତ ଚିତ୍ରକୂଟ ଶୈଳ ପରିବର୍ତ୍ତେ ଗୋବର୍ଦ୍ଧନ ଗିରିରାଜ ସେତେବେଳେ ଅତ୍ୟନ୍ତ ପ୍ରିୟବସ୍ତୁ ରୂପେ ଗଣ୍ୟ ହେବେ । ଆଉ ତତ୍ରସ୍ଥ ଆଶ୍ରମ ସମ୍ମୁଖରେ ଯେଉଁ କଦମ୍ବତରୁ ବିଦ୍ୟମାନ ଦ୍ୱାପରରେ ତାହା କେଳିକଦମ୍ବ ପ୍ରଭୁଙ୍କର ଆଶ୍ରୟତରୁ ହେବ । ସେତେବେଳେ ସେ ହ୍ଲାଦିନୀଶକ୍ତି ଅନ୍ତର୍ଭୁକ୍ତ ଏକ ଅପରୂପ ରୂପରେ ଆତ୍ମପ୍ରକାଶ କରିବେ । ପ୍ରଭୁଙ୍କର ଏହି ରହସ୍ୟଜନକ ବିବରଣୀରେ ଅନମନା

ହୋଇ ମାତା ଜାନକୀ ସେହି ନିରୁପମ ରୂପମାଧୁରୀ ଦର୍ଶନ କରିବା ଲାଗି ବ୍ୟଗ୍ର ହୋଇଉଠିଲେ । ପ୍ରଭୁ ସାତଦିନ ସମୟ ନେଲେ । ମାତ୍ର ଚତୁର୍ଥ ଦିନରେ ଦେବୀ ଅଥୟା ହେବାରୁ ପ୍ରଭୁ ତାଙ୍କୁ ପ୍ରସ୍ତୁୟମାନ ଶ୍ରୀମୂର୍ତ୍ତି ଦର୍ଶନ କରାଇଲେ । ମାତ୍ର ସୀତାଦେବୀଙ୍କର ଶ୍ରୀକର ପଲ୍ଲବରେ ସେହି ମୂର୍ତ୍ତି ସଂଜୀବନୀ ଶକ୍ତିରେ ସଂଜୀବିତ ହେବାରୁ ମାତା ଏହାର ଆରାଧନାର ଭାର ନେଲେ । ତାହା ଥିଲା ସମଗ୍ର ବ୍ରଜଲୀଳାର ସଂକ୍ଷିପ୍ତ ସାର ସମାବେଶ ଅନିଦ୍ୟ ସୁନ୍ଦର ଅଖିଳ ରସାମୃତ ମୂର୍ତ୍ତିର ଏକତ୍ର ସହବାସ୍ଥାନ ଏକ ଅଙ୍ଗରେ ସଖୀ, ସଖା, ବତ୍ସା ସହ ଧେନୁ ଓ ସର୍ବାଳଙ୍କାର ସମନ୍ୱିତ ବିଗ୍ରହ । ପୁନଶ୍ଚ ଦୁଷ୍ଟ ରାକ୍ଷସ ରାଜା ରାବଣ ମାତା ସୀତାଙ୍କୁ ଚୋରାଇ ନେଇଥିଲା ଓ ଲଙ୍କାରେ ରଖିଥିଲା । ସେତେବେଳେ ପ୍ରଜାପତି ବ୍ରହ୍ମା ଏହି ବିଗ୍ରହ ପୂଜାର ଦାୟିତ୍ୱ ନେଇଥିଲେ ।

ଶ୍ରୀରାମଚନ୍ଦ୍ର ସାତ ସମୁଦ୍ର ତେରନଈ ପାରିହୋଇ ସ୍ୱର୍ଣ୍ଣଲଙ୍କାରେ ଉପବିଷ୍ଟ ହୋଇ ଦୁଷ୍ଟ ରାବଣକୁ ନିଧନ କରିଥିଲେ । ଅଯୋଧ୍ୟାକୁ ପ୍ରତ୍ୟାଗମନ ସମୟରେ ସନ୍ଧ୍ୟା ହେବାରୁ ପ୍ରଭୁ ଏକ ରମଣୀୟ ସ୍ଥାନ ଦେଖି ରାତ୍ରି ଯାପନ କରିବାକୁ ଇଚ୍ଛା ପ୍ରକାଶ କଲେ । ସୀତାଦେବୀ ସେ ସମୟରେ ହଠାତ୍ ରଜସ୍ୱଳା ହେଲେ । ମାତ୍ର ଚତୁର୍ଥ ଦିବସ ଦେବୀଙ୍କର ନଦୀର ଅବଗୋହନ ସ୍ନାନର ବାସନା ଜାଗିଉଠିଲା । (ଶୁଦ୍ଧ ସ୍ନାନ ପରେ ସ୍ତ୍ରୀର ଦୃଷ୍ଟି ପ୍ରଥମେ ଦେବତାଙ୍କ ଉପରେ ଓ ପରେ ନିଜ ସ୍ୱାମୀଙ୍କ ଉପରେ ପଡ଼ିବା ବିଧାନ ହିନ୍ଦୁଶାସ୍ତ୍ରରେ ଅଛି ।) କିନ୍ତୁ ସେ ସ୍ଥାନରେ କୌଣସି ନଦୀ ନଥିବାରୁ ଶ୍ରୀ ରାମଚନ୍ଦ୍ର ନିଜ ଧନୁ ଦ୍ୱାରା ସାତଥର ଶର ସଂଯୋଜନା କରି ସେଠାକାର କୌଣସି ଗୋଟିଏ ସ୍ଥାନର ଭୂମି ଭେଦକରି ତତ୍କ୍ଷଣାତ୍ ସେହି ସ୍ଥାନଟିକୁ ନଦ୍ୟାକାରରେ ପରିଣତ କରିଦେଲେ । ସେହି ତ୍ରେତା ଯୁଗରେ ଏହି ରମଣୀୟ ସ୍ଥାନର ନାମ ପରିଭାଷିକ ଶବ୍ଦରେ 'ରମଣା ବା ରେମୁଣା' ଏବଂ ନଦୀଟିର ନାମ 'ସପ୍ତଶରା' ହୋଇଛି । ଏହା ଗାର୍ଗେଶ୍ୱର ଆମ୍ରକୁଞ୍ଜ ତଳୁ ବାହାରି ପୂର୍ବମୁଖୀ ହୋଇ ବହିଯାଉଛି । ଏହି ଶପ୍ତଶରା ନଦୀଟି ଅଦ୍ୟାବଧି କ୍ଷୀଣରେଖା ରୂପେ ସ୍ରୋତହରା ହୋଇ ବିଦ୍ୟମାନ ରହିଛି । ଏହି ନଦୀର ତୀର ଆମ୍ର, କଦମ୍ବ ବୃକ୍ଷମୂଳରୁ ଅନେକ ସମୟରେ ଅର୍ଦ୍ଧ ନିଶିଥରେ ଗୋପୀନାଥଙ୍କର ବଂଶୀାଦନ ହେବାର ଶୁଣାଯାଏ । କେହି କେହି ଭକ୍ତ ନଦୀତଟ ବୃକ୍ଷମୂଳରୁ ଗୋପୀନାଥଙ୍କର ବଂଶୀ ପାଇ ଗୋପୀନାଥଙ୍କୁ ଅର୍ପଣ କରିଥିବାର ଲୋକମୁଖରୁ ଶୁଣିବାକୁ ମିଳେ ।

ବର୍ତ୍ତମାନ ଏହି ନଦୀଟି ସଂକୀର୍ଣ୍ଣ ହୋଇ ନାଳରେ ପରିଣତ ହୋଇଛି । ସିଂଲ ଉତ୍ତର ପାଖରେ ଏହି ନାଳକୁ ବରୁଣେଇ ନାଳ କହନ୍ତି । ଏହି ମାଟିକୁ ଗୁପ୍ତବୃନ୍ଦାବନ ଓ ଏହି ନାଳ ତା'ର ଯମୁନା ଭାବରେ ଆକ୍ୟାଦେଇ ସମସ୍ତ ଭକ୍ତକୂଳକୁ ଶ୍ରୀକୃଷ୍ଣ ଚୈତନ୍ୟ ହ୍ଜେଇ ମଜେଇ ପବିତ୍ରତା ପ୍ରଦାନ କରି ଆସୁଛନ୍ତି ।

●●●

## ଷଷ୍ଠ ଅଧ୍ୟାୟ

# ଗାର୍ଗେଶ୍ୱର ମହାଦେବ

ପୁରାଣ ପ୍ରସିଦ୍ଧ ତୀର୍ଥଭୂମି ମାନଙ୍କ ମଧ୍ୟରୁ ଗାର୍ଗେଶ୍ୱର ମହାଦେବ ଅନ୍ୟତମ । ପୁରାଣ ଯୁଗରେ ଏଠାରେ ଗାର୍ଗେଶ୍ୱର ଋଷିଙ୍କର (ଯିଏକି ଶ୍ରୀକୃଷ୍ଣଙ୍କର ନାମକରଣ କରିଥିଲେ) ଆଶ୍ରମ ଥିଲା । ଶ୍ରୀରାମଚନ୍ଦ୍ର କର୍ତ୍ତୃକ ସପ୍ତଶର ନିକ୍ଷିପ୍ତ ପାଳାଳୋଚ୍ଛିତା ସପ୍ତଶରା ସରିତ ସୈକତରେ ଦେବାଧିଦେବ ମହାଦେବ ଶ୍ରୀ ଶଙ୍କରଙ୍କର ଲିଙ୍ଗରାଜ ମୂର୍ତ୍ତି ବିଦ୍ୟମାନ ଋଷି ଆଶ୍ରମରେ ରହି ସେ ଯୁଗରେ ସମସ୍ତ ପିଲାମାନେ ବିଦ୍ୟାଧ୍ୟୟନ କରି ସଂଯମ ସାଧନ ପୂର୍ବକ ଦେଶର ଚଳନ ରୀତିରେ ଶିକ୍ଷା କରୁଥିଲେ । ପ୍ରତ୍ୟେକଦିନ ଯଜ୍ଞ ଧୂମରେ ଗରମ ପବନ ଘୂରି ଉଠିବା ସହ ବେଦ ଗାୟତ୍ରୀ ମନ୍ତ୍ରରେ ଉକ୍ତ ପୀଠ ମୁଖରିତ ହେଉଥିଲା ।

ଗର୍ଗ ମୁନି ପ୍ରତିଦିନ ଉକ୍ତସ୍ଥାନରେ ଧ୍ୟାନମଗ୍ନ ରହୁଥିଲେ । କିଛିଦିନ ଉତ୍ତାରୁ ହଠାତ୍ ଦିନେ ତାଙ୍କର ଦୃଷ୍ଟି ପଡ଼ିଲା ଗୋଟିଏ ଅତ୍ୟାଶ୍ଚର୍ଯ୍ୟ ଘଟଣା ପ୍ରତି । ଗୋଟିଏ ପୟସ୍ୱିନୀ ଗାଭୀ ପ୍ରତିଦିନ ଆସି ଏକ ନିର୍ଦ୍ଦିଷ୍ଟ ସ୍ଥାନରେ ଦଣ୍ଡାୟମାନ ହୋଇ ସ୍ୱତଃସ୍ଫୂର୍ତ୍ତ ଭାବେ ନିଜ ପହ୍ନାରୁ ଦୁଗ୍ଧଧାରା କ୍ଷରଣ କରୁଥିଲା ।

ଏହିପରି ଭାବେ କିଛିଦିନ ଅତିବାହିତ ହେବାପରେ ଗର୍ଗମୁନିଙ୍କ ମନରେ ପ୍ରବଳ କୌତୁହଳ ଜାତ ହେଲା । ତତ୍‌ପରେ ସେ ସେହି ସ୍ଥାନ ଖନନ କରିବାକୁ ପ୍ରବୃତ୍ତ ହେଲେ । ମୃତ୍ତିକା ଖନନ କରୁ କରୁ ଦେଖିବାକୁ ପାଇଲେ ଏକ ଅଦ୍‌ଭୂତ ଶକ୍ତି ସମନ୍ୱିତ ଲିଙ୍ଗରାଜ ମୂର୍ତ୍ତି । ଏହି ମୂର୍ତ୍ତି ଆବିଷ୍କାର ଦ୍ୱାରା ସେ ବିସ୍ମୟ ବିମୁଢ଼ ହୋଇ ଭକ୍ତି ଗଦଗଦ ଅନ୍ତରରେ ଶିବସ୍ତୁତି ଓ ପ୍ରଣତି କରିବାକୁ ଲାଗିଲେ ଓ 'ହରିହରି' ଅଭିନ୍ନ ମୂର୍ତ୍ତି ପ୍ରେମାପ୍ଳୁତ ମାନସରେ ନିତ୍ୟ ଆରାଧନା କରିବାକୁ ଲାଗିଲେ ସୁଦୀର୍ଘ କାଳ ପର୍ଯ୍ୟନ୍ତ ।

ପରେ ବାଲେଶ୍ୱର ନାମ ପ୍ରକାଶନ ପୁରୁଣା ପ୍ରସିଦ୍ଧ ନିଷ୍ଠାବାନ୍ ଶିବଭକ୍ତ ବାଣାସୁର ମହୀପତି ଶ୍ରୀ ଗର୍ଗମୁନି କର୍ତ୍ତୃକ ଆବିଷ୍କୃତ ଓ ସେ ଶ୍ରୀ ଗାର୍ଗେଶ୍ୱର ଶିବ ମନ୍ଦିର ନିର୍ମାଣ କରି ତାର ପୂଜାର୍ଚ୍ଚନାର ବ୍ୟବସ୍ଥା କରିଦେଲେ ଏବଂ ଯେପରି ସ୍ଥାୟୀ ସେବା ଭବିଷ୍ୟତରେ ବ୍ୟାହାତ ନହୁଏ ସେଥିଲାଗି ପୂଜକ ଓ ସେବା ପରିଚାଳନା ଲାଗି ଆମ୍ରବୃକ୍ଷ ସମନ୍ୱିତ ବିଶାଳ ଭୂଖଣ୍ଡ ଦାନକଲେ । ଶ୍ରୀ ଶିବଶଙ୍କର ମହାସ୍ନାନ ନିମିତ୍ତ ଗୋଟିଏ ପ୍ରକାଣ୍ଡ କୁଣ୍ଡ (ଦୀର୍ଘିକା) ଖନନ କରିଦେଲେ । ଶ୍ରୀ ମୂର୍ତ୍ତିଙ୍କର ନିତ୍ୟ ଭୋଗରାଗ ପାଇଁ ଶିବୋତ୍ତର ରୂପେ ଶସ୍ୟ ଉତ୍ପାଦନ ଯୋଗ୍ୟ ପ୍ରଚୁର ଜମି ଦାନ କଲେ । ଅଦ୍ୟାବଧି ସେହିସବୁ ବ୍ୟବସ୍ଥା ବିଦ୍ୟମାନ । ପ୍ରତିବର୍ଷ ଶିବରାତ୍ରୀ ଉପଲକ୍ଷେ ମହାସମାରୋହରେ ଉତ୍ସବ ପାଳିତ ହୋଇଆସୁଛି । ଭକ୍ତ ମନୋବାଞ୍ଛା ପୂରଣ କରନ୍ତି । ଏଥିଲାଗି ଉକ୍ତ ସ୍ଥାନରେ (ପୀଠରେ) ବହୁ ଅର୍ଥୀ, ପ୍ରାର୍ଥୀ, ଜ୍ଞାନୀ, ଯୋଗୀ ଓ ଭକ୍ତବୃନ୍ଦଙ୍କର ସମାଗମ ହୋଇଥାଏ ।

କିମ୍ବଦନ୍ତୀରୁ ଜଣାଯାଏ ଯେ ପରମ ଶିବଭକ୍ତ ବାଣାସୁର ବାଲେଶ୍ୱର ଜିଲ୍ଲାରେ ପାଞ୍ଚଟି ପ୍ରସିଦ୍ଧ ଶିବମନ୍ଦିର ଯଥା- ଗାର୍ଗେଶ୍ୱର(ଗୋପୀନାଥ ଧାମ), ବକ୍ରେଶ୍ୱର(ବାଙ୍କେଶ୍ୱର), ଖେଜୁରେଶ୍ୱର(ଶେରଗଡ଼), ମଣିନାଗେଶ୍ୱର (ବର୍ଦ୍ଧନପୁର) ଓ ବାଣେଶ୍ୱର(ପୁରୁଣା ବାଲେଶ୍ୱର) ନିର୍ମାଣ କରି ପ୍ରତ୍ୟେହ ଉକ୍ତ ମନ୍ଦିରର ସମସ୍ତ ମହାଦେବ ଦର୍ଶନ କରିବା ପରେ ପାନାହାର କରୁଥିଲେ । ବାଣାସୁରର ଗଡ଼ ଉତ୍ତର ବଳଙ୍ଗ କୂଳରେ ତେମୁହାଣୀ ଠାରେ ଅବସ୍ଥିତ ଥିଲା । ଶୁଣିବାକୁ ମିଳେ ଯେ, ବାଣାସୁର ଝିଅ ଉଷା ପ୍ରତ୍ୟେହ ଶିବପୂଜା କରିବା ପାଇଁ ଗାର୍ଗେଶ୍ୱର ଧାମ

ଆସୁଥିଲା । ତେଣୁ ଶିବ ଦର୍ଶନ ପାଇଁ ଆସିବା ନିମିତ୍ତ ବାଣାଗଡ଼ ଡ଼ିହସାହି ଠାରୁ ବଳଙ୍ଗ ତୀରରୁ ଗାର୍ଗେଶ୍ୱର ଯାଏଁ ବିଲ ମଧଦେଇ ଏକ ସଡ଼କ ନିର୍ମାଣ ହୋଇଥିଲା । ବର୍ତ୍ତମାନ ପୋଖରୀ ଆଡ଼ି ସଦୃଶ ଏକ କଣ୍ଟାବୁଦା ପରିପୂର୍ଣ୍ଣ ଲମ୍ବମାନ ରେଖାପରି ଉକ୍ତ ସଡ଼କର ନଷ୍ଟାବଶେଷ ଅନାବାଦୀ ପରି ପଡ଼ି ରହିଥିବାର ଦେଖାଯାଏ । ଏହା ବାଣାସୁରର ସେହି ଅତୀତ ସ୍ମୃତିକୁ ମନ ମଧ୍ୟରେ ଉଜ୍ଜିବୀତ କରେ ।

●●●

## ସପ୍ତମ ଅଧ୍ୟାୟ

# ଶ୍ରୀ ଶ୍ରୀ ଅଷ୍ଟାଦଶଭୂଜା (ମହାଲକ୍ଷ୍ମୀ) ଦୁର୍ଗା

ଓଁ ସର୍ବରୂପମୟୀ ଦେବୀ ଦେବୀମୟଂ ଜଗତ୍ ।
ଅତୋହଂ ବିଶ୍ୱରୂପା ତାଂ ନମାମି ପରମେଶ୍ୱରମ୍ ॥
ଓଁ ଯା'ଦେବୀ ସର୍ବଭୂତେଷୁ ମାତୃରୂପେଣ ସଂସ୍ଥିତା ।
ନମସ୍ତସ୍ୱୈ ନମସ୍ତସ୍ୱୈ ନମସ୍ତସ୍ୱୈ ନମୋଃ ନମୋଃ ॥
ଓଁ ସର୍ବବାଧା ପ୍ରଶମର୍ନ ତ୍ରୈଲୋକ୍ୟାସ୍ୟା ଖିଲେଶ୍ୱରି ।
ଏବ ମେବ ତ୍ୱୟା କାର୍ଯ୍ୟ ମସ୍ମଦ୍ ବୈରି ବିନାଶମ୍ ॥

ବାଲେଶ୍ୱର ଜିଲ୍ଲାର ରେମୁଣା ବୈଷ୍ଣବ ଧାମ କ୍ଷୀରଚୋରା ଗୋପୀନାଥ ଧାମର ଅନ୍ୟତମ ପ୍ରସିଦ୍ଧ ବୈଷ୍ଣବ କ୍ଷେତ୍ର ପରମ ବୈଷ୍ଣବୀ ଅଷ୍ଟାଦଶଭୂଜା ଦୁର୍ଗାଙ୍କ ଲୀଳାସ୍ଥଳୀ ବିଦ୍ୟମାନ । ଏହା ରେମୁଣା ବଜାରଠାରୁ ପ୍ରାୟ ୨କି.ମି. ଦୂରରେ ଲାଲପାଟଣା ପଞ୍ଚାୟତ କୁଟପୋଖରୀର ପଶ୍ଚିମ ତଟରେ ଅବସ୍ଥିତ । ପରମ

ବିରକ୍ତ ବୈଷ୍ଣବ ହରିଗୋଲାମ ଦାସଜୀ ମହାରାଜ ଶକ୍ତିମାନ ଶ୍ରୀ ଜଗନ୍ନାଥଙ୍କୁ ଓ ଶକ୍ତିମୟୀ ମା' ଦୁର୍ଗାଙ୍କୁ ପ୍ରତିଷ୍ଠା କରି ଶକ୍ତି ଓ ଭକ୍ତିର ଅପୂର୍ବ ସମନ୍ୱୟ କରିଯାଇଛନ୍ତି ।

ଏହି କୂଟ ପୋଖରୀ ଉତ୍କଳ ସମ୍ରାଟ ଲାଙ୍ଗୁଳାନରସିଂହ ଦେବଙ୍କ ସ୍ତ୍ରୀଙ୍କ ଦ୍ୱାରା ରାଜାଙ୍କ ଅଜ୍ଞାତରେ ଖନନ କରାଯାଇଥିବାରୁ ତାର ନାମକରଣ ଏହିପରି କରାଯାଇଛି । ଭାରତର କର୍ଣ୍ଣାଟକ୍ ରାଜ୍ୟରେ ପ୍ରଥମେ ଅଷ୍ଟଦଶଭୂଜା ମନ୍ଦିର ଓ ଉତ୍କଳର ଏହା ଦ୍ୱିତୀୟ ମନ୍ଦିର । କଳାପାହାଡ଼ ଦ୍ୱାରା ଧର୍ମାନ୍ତରିତ ହୋଇ ମୁସଲମାନ ସାହି 'କଳାପାହାଡ଼' ଅଷ୍ଟାଦଶଭୂଜା ଦୁର୍ଗାଙ୍କ ମନ୍ଦିରକୁ ଲାଗି ରହିଛି ।

ସ୍ୱର୍ଗତଃ ବଂଶୀଧର ରଥଶର୍ମା ପ୍ରଥମେ ଅଷ୍ଟାଦଶଭୂଜା ଦୁର୍ଗାଙ୍କ ମୃଣ୍ମୟ ମୂର୍ତ୍ତି ନିର୍ମାଣ କରି ସ୍ୱଗୃହେ ଆଠବର୍ଷ ଧରି ପୂଜା କରୁଥିଲେ । ତତ୍‌ପରେ ବାବାଜୀ ସ୍ୱର୍ଗତଃ ହରି ଗୁଲାମ ରାମାନୁଜ ଦାସ ମହାରାଜ ଏ ବିଗ୍ରହର ଦାୟିତ୍ୱ ନେଇ ୧୯୧୦ରେ ମା'ଙ୍କ ମୂର୍ତ୍ତି ପ୍ରତିଷ୍ଠା କରିଥିବାର ଜଣାଯାଏ । ବାବାଜୀ ମହାରାଜା ସ୍ୱାଧୀନତା ଆନ୍ଦୋଳନରେ ସାମିଲ ପୂର୍ବକ ଏଠାରେ ଗୁପ୍ତ ସଂଗଠନ କରି ଆନ୍ଦୋଳନ ଚଳାଇଥିବାରୁ ଇଂରେଜମାନେ ୧୯୧୪ରେ ତାଙ୍କୁ ଧରି ନାସିକ ଜେଲ୍‌ରେ ରଖିଥିଲେ । ସେ ଭାରତଭାରତ କେବେ ସ୍ୱାଧୀନତା ପାଇବ ତାହାର ଭବିଷ୍ୟ ବାଣୀ ଶୁଣାଇଥିଲେ । ସେ ରେମୁଣାରେ ଏକ 'ଟୋଲ୍‌ବାଡ଼ି' ଗଠନ କରିଥିଲେ । ଦେବୀଙ୍କର ସାମ୍ନାରେ ଯଜ୍ଞ କରୁଥିବା ଅବସ୍ଥାରେ ୧୯୨୯ରେ ଦେହତ୍ୟାଗ କରିଥିଲେ । ସେ ବୈଷ୍ଣବ ମାର୍ଗୀ ହେବା ପରେ ଛତିଆ ମଠରୁ ହସ୍ତପାଦ ଧୋଇ ଜଗନ୍ନାଥ, ବଳରାମ ଓ ସୁଭଦ୍ରା ବିଗ୍ରହ ଆଣି ପୀଠାଧିଶ ଶ୍ରୀ ଜଗନ୍ନାଥ ଓ ପୀଠେଶ୍ୱରୀ ଅଷ୍ଟାଦଶଭୂଜା ଦୁର୍ଗାଙ୍କୁ ପୂଜା କରୁଥିଲେ । ତାହାଙ୍କ ଦେହାନ୍ତ ପରେ ତାଙ୍କର ମାନସ ପୁତ୍ର ତ୍ରିଲୋଚନ ଦାସ ଓ ତାଙ୍କ ପରେ ତାଙ୍କର ସ୍ତ୍ରୀ ଚନ୍ଦ୍ରମଣି ଦାସ ସେବାପୂଜା କଲେ । ୧୯୧୪ରୁ ୧୦୨ବର୍ଷ ବୟସରେ ସେ ଇହଲୀଳା ତ୍ୟାଗକଲେ ।

୧୯୮୬ରେ ଏହି ମନ୍ଦିରର ପରିଚାଳନା ପାଇଁ ଏକ ଗ୍ରାମ୍ୟ କମିଟି ଗଠନ ପୂର୍ବକ ୧୯୯୧ରୁ ସରକାର ଏହି ମନ୍ଦିରର ପରିଚାଳନା ପାଇଁ ଏକ ଟ୍ରଷ୍ଟବୋର୍ଡ଼ ଗଠନ କରିଛନ୍ତି ।

ଉକ୍ତ ବୈଷ୍ଣବ ପୀଠରେ ଦେବୀଙ୍କର ଆରୁଢ଼ା ମା' ଅଷ୍ଟାଦଶଭୂଜା ଦୁର୍ଗା(ମହାଲକ୍ଷ୍ମୀ)ଙ୍କ ବିଗ୍ରହ । ରଣନ୍ତୋଭ, ମନ୍ଦାରପୁଷ୍ପ ଓ ବିଲ୍ୱପତ୍ରରେ ଭୂଷିତା,

ରକ୍ତବର୍ଣ୍ଣା, ପୀତବସନ ପରିହିତ, ବିବିଧଅଳଙ୍କାରରେ ଭୂଷିତା ମା' ଦୁର୍ଗା ବିରାଜିତ ହୋଇ ଅତ୍ୟନ୍ତ ମନୋରମ ତଥା ଦୃଷ୍ଟି ଆକର୍ଷଣୀୟ ହୋଇଛନ୍ତି । ଦେବୀଙ୍କ ମେଢ଼ ମଧରେ ଗଣେଶ, ଲକ୍ଷ୍ମୀ, ସରସ୍ୱତୀ, କାର୍ତ୍ତିକ ଓ ଶିବଙ୍କ ବିଗ୍ରହ ବିରାଜିତ । ଉକ୍ତ ମେଢ଼ ସମ୍ମୁଖରେ ପୂର୍ବ ଦିଗରେ କୂଟେଶ୍ୱର ମହାଦେବଙ୍କ ମନ୍ଦିର ବିରାଜିତ । ଏକାଧାରାରେ ଏହା ବୈଷ୍ଣବ, ଶୈବ ଓ ଶକ୍ତି ଉପାସନାର ଜ୍ୱଳନ୍ତ ଉଦାହରଣ ପୂର୍ବକ ସତ୍ତ୍ୱ, ରଜ ଓ ତମର ପ୍ରତୀକ । ଅଷ୍ଟାଦଶଭୂଜା ମହାଲକ୍ଷ୍ମୀ ହିଁ 'ବନଦୁର୍ଗା' ହୋଇଥିବାରୁ ଦୁର୍ଗାପୂଜା ସମୟରେ ତାଙ୍କର ନବରାତ୍ର ପୂଜା ହୁଏ ।

ଭାଗବତରେ ପ୍ରମାଣ ଅଛି ଯେ, ଯେତେବେଳେ ପ୍ରଭୁ କୃଷ୍ଣଚନ୍ଦ୍ର ଧରାପୃଷ୍ଠରେ ଅବତୀର୍ଣ୍ଣ ହେଲେ ସେତେବେଳେ ତାଙ୍କ ଆହ୍ଲାଦିନୀ ଶକ୍ତି ସ୍ୱରୂପିଣୀ ଶ୍ରୀରାଧା ଦେବୀଙ୍କୁ ଓ ମାୟାଶକ୍ତି ସ୍ୱରୂପିଣୀ ଶ୍ରୀ ଦୁର୍ଗାଙ୍କ ମର୍ତ୍ତ୍ୟରେ ପ୍ରକାଶ କରାଇଥିଲେ । ଅଷ୍ଟଦଶଭୂଜା ହେଉଛନ୍ତି ବ୍ରହ୍ମା, ବିଷ୍ଣୁ, ରୁଦ୍ରରୂପିଣୀ । ସେ ସୃଷ୍ଟିକର୍ତ୍ତୀ, ପାଳନକର୍ତ୍ତୀ, ସଂହାରକର୍ତ୍ତୀ । କିନ୍ତୁ ବସ୍ତୁତଃ ସେ ଏକ ଓ ଅଭିନ୍ନ ।

ଏଠାରେ ରଜ ସଂକ୍ରାନ୍ତି ଦିନ ଅନେକ ଲୋକ ସମାଗମ ସହିତ ଉଡ଼ାଯାତ୍ରା ହୁଏ । ଏଠାରେ ପୀଠେଶ୍ୱର ଶ୍ରୀ ଜଗନ୍ନାଥଙ୍କୁ ବିଷ୍ଣୁମନ୍ତ୍ରରେ ଭୋଗ ଓ ଆରତୀ ଅର୍ପଣ ପୂର୍ବକ ଦେବୀଙ୍କ ନିକଟରେ ତାହାକୁ ଦୁର୍ଗାମନ୍ତ୍ରରେ ସମର୍ପଣ କରାଯାଏ । ଏହା ବୈଷ୍ଣବ ପୀଠ ହୋଇଥିବାରୁ ଦେବୀଙ୍କୁ ବୈଷ୍ଣବୀ ଭାବରେ ନିତ୍ୟସେବା କରାଯାଏ । ଏଠାରେ ଶ୍ରୀ ଜଗନ୍ନାଥଙ୍କ ପ୍ରସାଦ ମା'ଙ୍କ ପାଖରେ ଅର୍ପଣ କଲେ ତାହା ମହାପ୍ରସାଦରେ ପରିଣତ ହୋଇଥାଏ । ଅଧୁନା ଦେବୀ ତଥା ପୃଥିବୀର ସଂକଟାପନ୍ନ ସମୟ ଭିତରେ ସେହି ଶକ୍ତିମୟୀ ମା'ଙ୍କର ଶରଣାପନ୍ନ ହିଁ ପ୍ରତ୍ୟେକ ଭକ୍ତଙ୍କର ପରମ କର୍ତ୍ତବ୍ୟ ।

●●●



# ଗୀତ - ୧

ସେ'ତ ନୀଳାଚଳ ଜଗନ୍ନାଥ
ସେ'ତ ରେମୁଣାରେ ଗୋପୀନାଥ
ସିଏ ସବୁଠି କରୁଛି ନାଟ
ଆରେ ବସେଇ ଭକତ ହାଟ
ସିଏ ଜଗନ୍ନାଥ
ସିଏ ଗୋପୀନାଥ
ସିଏ ନନ୍ଦ ସୂତ
ସିଏ ଦାରୁଭୂତ
ସେ'ତ ନୀଳାଚଳ ଜଗନ୍ନାଥ...... (୦)
ଭାରି ରମଣୀୟ ଏ ରେମୁଣା
ସ୍ୱୟଂ ରାମଙ୍କର ସରଜନା
ଏଠି ଦ୍ୱାପର ଲୀଳାରେ କାହ୍ନା
ସାଥେ ଅଷ୍ଟସଖୀ ମନ କିଣା
ତା'ର ବାରମାସେ ତେର ଯାତ
ସିଏ ପଥରରେ ନିରିମିତ
ସେ କ୍ଷୀର ଭୋଗେ ହୁଏ ପ୍ରୀତ
ତା'ର ମାଧବେନ୍ଦ୍ର ବଡ଼ ଭକ୍ତ
ସେ'ତ ନୀଳାଚଳ ଜଗନ୍ନାଥ.....(୧)
ପୁଣି ନୀଳାଚଳେ ଦାରୁବ୍ରହ୍ମ
ସ୍ୱୟଂ ଅନ୍ତର୍ଯ୍ୟାମୀ ନାରାୟଣ
ଏ କଳି କାଳରେ କଳା ନାବିକ ସେ
ଭବ ସାଗରରୁ କରେ ତ୍ରାଣ
ତା'ର ବଡ଼ ପରା ଘୋଷ ଯାତ
ତା'ର ଅଧା ଗଢ଼ା ଗୋଡ଼ ହାତ
ଆରେ ପାଳୁଚି ସାରା ଜଗତ
ମିଛ ଦୁନିଆରେ ଏକା ସତ
ସେ'ତ ନୀଳାଚଳେ ଜଗନ୍ନାଥ.....(୨)

# ଗୀତ - ୨

ବ୍ରଜବାସୀ କଳା କହ୍ନେଇ, କହ୍ନେଇ
କାହିଁଗଲା ତୁମ ରାଧିକା ମାଇଁ
ରହି ଏକା ଏକା ହେଉନି କି ବୋକା
ମନେ କି ପଡୁନି ଯମୁନା ନଈ
ଆଖି ଲୁହ ମଲା ଯୋଶଦା ମାଆର; ତତେ ଅନେଇରେ କଳା କହ୍ନେଇ...
ବ୍ରଜବାସୀ କଳା କହ୍ନେଇ.......(୦)
ଗୋପପୁର ସାରା ଯେତେ ଗୋପନାରୀ
ତୁମ ପାଶ ଜମା ଛାଡ଼ନ୍ତି ନାହିଁ
ନିମିଷକ ପାଇଁ ଅଦୃଶ ହୋଇଲେ
ଖୋଜା ପଡ଼ିଥାଏ କହ୍ନେଇ କାହିଁ
କେମିତି ଭୁଲିଚ ଗୋପନଗର
ଚୋରି କରି ଖିଆ ଲବଣି ସର (୨ଥର)
ରାଧା ମାଇଁ ଅବା ଦେଇଛି କି ଧୋକ୍କା
ବିରହୀ ସାଜିଚ ଏକାକୀ ରହି......
ଆଖି ଲୁହ ମଲା ମୀରାର ତତେ; ଅନେଇରେ କଳା କହ୍ନେଇ...
ବ୍ରଜବାସୀ କ୍ଳା କହ୍ନେଇ.......(୧)
ଏ କଳି କାଳରେ ରେମୁଣା ଧାମରେ
ଗୋପୀନାଥ ନାମେ ବସିଚ ତାହିଁ
ଗୁପ୍ତବୃନ୍ଦାବନ ବଇଷ୍ଣବ ଧାମ
ଧନ୍ୟ ହୋଇଅଛି ତୁମରି ପାଇଁ
ଭକତ ଭକ୍ତିରେ କ୍ଷୀର ଚୋରାଇ
କି ଯଶ ଲଭିଲୁ ଜଗତ ପାଇଁ (୨ଥର)
ଭକତର ଦୁଃଖ ବୁଝୁବୁଝୁ ତମେ ଘର ସଂସାର କି ଭୁଲିଗଲଣି
ଗୋପ ଆକାଶରେ ଘୋର ଅନ୍ଧକାର; ପୁନେଇ ନାହିଁରେକଳା କହ୍ନେଇ
ବ୍ରଜବାସୀ କଳା କହ୍ନେଇ.........(୨)

# ଗୀତ - ୩

ରୁଚୁ କି ନରୁଚୁ ଖାଆ ପିତା
    ଆଲୋ ଲଳିତା
ବୁଝ୍ ନ ବୁଝ୍ ଶୁଣ୍ ଗୀତା
    ଆଲୋ ଲଳିତା
ତେବେ ସିନା ତୁହି ଭକତ ଭିତରେ
    ହେବୁ ତୁ ଜଗତ ଜିତା ଲୋ ଲଳିତା । (୨ଥର)
ରୁଚୁ ନରୁଚୁ ଖାଆ ପିତା......(୦)
ନିତି ତୁ ଶୁଣିବୁ ଗୀତାର ବଚନ
    ମନରେ ଶୁଣିବୁ ତାହାର ମରମ
ତା ପାଦରେ ଧ୍ୟାୟୀ କରିବୁ କରମ
    ଧନ୍ୟ ହେବ ତୋର ଅଲୋଡ଼ା ଜୀବନ
ପୁରାଣ ଭିତରେ ସାର ଲୋ
ଜାଣିଥା ଗୀତାର ଯୋଗାଡ କଥା.....
ରୁଚୁ ନ ରୁଚୁ ଖାଆ ପିତା ......(୧)
ଏ ଜୀବନ ପରା ଦୁଇ ଦିନ ପାଇଁ
ଆଜି ତୁ ଚେଇଁବୁ କାଲି ଯିବୁ ଶୋଇ
ଜୀବ୍ ପରମର ହୋଇଗଲେ ଭେଟ
    ଖୋଲିଯିବ ତୋର ପୁଣ୍ୟ କବାଟ
ମନ ଯେ ଚଞ୍ଚଳ ଅତି ଲୋ
ଭଜୁଥା ହରେକୃଷ୍ଣ ରାମ ସୀତା
ରୁଚୁ ନ ରୁଚୁ ଖାଆ ପିତା .....(୨)

# ଗୀତ - ୪

କଇଁଚ କାକୁଡ଼ି ନଳିତା ପିତା
ଏମିତି ସେମିତି ନୁହେଁ ସେ କଥା
ଜନମି ଥିଲା ସେ ଦେବକୀ ଗରଭୁ
ପାଳିଲା ଯୋଶଦା ମାତା
ସେ ଜଗତ ଜିତା ॥
ଦୁଇ କୂଳକୁ ହିତା
ସେ ପରମପିତା
ପାଦେ କୋଟି ଦେବତା
କଇଁଚ କାକୁଡ଼ି ନଳିତା ପିତା.....(୦)
ଜନମିଥିଲା ସେ ବନ୍ଦୀଶାଳାରେ
ଗୋପପୁର ଗଲା ରାତି ଅଧରେ
ଅନ୍ତଚିରି ଯିଏ ଦେଲା ଜନମ
ପର କରିଦେଲା ସେ ଘନଶ୍ୟାମ
ନନ୍ଦ ରାଜା ଘରେ ଆନନ୍ଦ ଲହରୀ
ବାହୁନୀ କାନ୍ଦୁଚି ଦେବକୀ ମାତା
କଇଁଚ କାକୁଡ଼ି ନଳିତା ପିତା ....(୧)
ଯୁଗେ ଯୁଗେ ତା'ର ଅଭୂଲା କୀରତି
ପାପ ନାଶି ଧର୍ମ ରଚିବାପାଇଁ
କଳିଯୁଗେ କଳା ଠାକୁର ହୋଇ ସେ
ଅଧାଗଢ଼ା ହୋଇ ବସିଚି ଚାହିଁ
ଧଳା ଘୋଡ଼ାରେ ସେ ମ୍ଳେଛ ସଂହାରିବ
ଭାବିଲେ ଲାଗିଚି ଅଦ୍ଭୁଆ ସୂତା
କଇଁଚ କାକୁଡ଼ି ନଳିତା ପିତା .....(୨)

# ଗୀତ - ୫

ଆ ମୋ କଳା କହ୍ନେଇ
ରତନବେଦୀରୁ ତୁ ଆ ଓହ୍ଲାଇ
ଆମେ ଦୁହେଁ ମିଶି ବଣକୁ ଯିବା
ଗାଇ ଚରେଇ, ଗାଇ ଚରେଇ.......
ଆ ମୋ କଳା କହ୍ନେଇ ......(୦)
ତୋ ପାଇଁ ମୁଁ ନେବି ସର ଲବଣି
ଯାହା ପ୍ରିୟ ତୋହର
ମିଠା କଥା କହି ମନ ଯେ କିଣିବି
ହେବି ମୁଁ ସଙ୍ଗାତ ତୋର
କଦମ୍ବ ଡାଳରେ ବାନ୍ଧିବା ଯେ ଦୋଳି
ତୋତେ ମୁଁ ବସେଇ ଦେବି ଝୁଲେଇ
ଆ ମୋ କଳା କହ୍ନେଇ ......(୧)
ଧନ୍ୟହେବି ଜୀବନେ
ଘୁଙ୍ଗୁର ବାନ୍ଧି ମୁଁ ନାଚିବି ତୋ ପାଇଁ
ବଇଁଶୀ ଥରେ ତୁ ଦେ ବଜେଇ
ଆ ମୋ କଳା କହ୍ନେଇ ......(୨)

# ଗୀତ - ୬

କାହ୍ନୁ ତୋତେ ବଇଁଶୀ ରାଣ
କାହ୍ନୁ ତୋତେ ଯମୁନା ରାଣ
ରାଧା ରାଣ
ମୀରା ରାଣ
କହ କହରେ ତୋ ପ୍ରେମିକା କେତେଜଣ....
ହେ ନଟନାଗର
ହେ ନନ୍ଦ କୁମର
ତୁ ପ୍ରେମ ସାଗର
ପ୍ରେମମୟ ଏ ସଂସାର
କାହ୍ନୁ ତୋତେ ବଇଁଶୀ ରାଣ ....(୦)
ପ୍ରେମରେ ପ୍ରେମରେ ବଇଁଶୀ ସୁରରେ
ଗୋପୀ ମନ ଚୋରିକଲୁ
ହସରେ ହସରେ ତୋ ପ୍ରେମ ଫାଶରେ
ରାଧାକୁ ମନେଇ ନେଲୁ
ତୁ ଗୋପରେ ପୁନେଇଁ ଜହ୍ନ
ତୁ ଯୋଶଦା ରଙ୍କୁଣୀ ଧନ
ତୁ ରାଧାରାଣୀ ମନ ପ୍ରାଣ
ତୁ ମୀରାବାଇର ସପନ
କୋଟିଏ ମନରେ କୋଟିଏ ପ୍ରାଣରେ କେମିତି ହେଲୁ ସ୍ଥାପନ
କହ କହରେ ତୋ ପ୍ରେମିକା କେତେଜଣ
କାହ୍ନୁ ତୋତେ ବଇଁଶୀ ରାଣ .....(୧)
ମନର ମଣିଷ ପାଇଁ ପ୍ରେମ କଲେ
ଆସେ କେତେ ଅସୁବିଧା
ତୋତେ ଯିଏ ପ୍ରେମକରି ଯେ ପାଇଛି
ଘୁଞ୍ଚିଯାଏ ସବୁ ବାଧା
ତୁ ଭକତି ଭାବରେ ବନ୍ଧା
ତୋ ବିନା ସବୁ ଯେ ଅଧା

ରାଇ ସହେ ତୋ ପାଇଁ ନିନ୍ଦା
ତୁ ଅଧା କୃଷ୍ଣ ଅଧା ରାଧା
ତୋତେ ଯେ ପାଇଛି ସବୁତ ଭୁଲିଛି
ହେ କଳା ବଦନ ....
କାହ୍ନୁ ତୋତେ ବଇଁଶୀ ରାଣ ......(୨)

# ଗୀତ - ୭

ଆଲୋ ବଉଳ ଲୋ ବଉଳ
ଟିକେ ବାହାରେ ତୁ ସଅଳ
ହେଲାଣି ସକାଳ ଗୁନ୍ଥିଦେ ମାଳି
ମନ୍ଦିରରେ ବାଜିଲାଣି ଘଣ୍ଟା ଖୋଳ
ଗୋପୀନାଥ ଆମେ ଦେଖିଯିବା ଲୋ....
ଆଲୋ ବଉଳ ଲୋ .....(୦)
ଅଧା ହାତ ନୁହେଁ ତା'ର ଅଧା ଗୋଡ଼ ନୁହେଁ
ନୀଳାଚଳବାସୀ ନୁହେଁ ରେମୁଣାରେ ରହେ
ବଡ଼ ପାଟି ନୁହେଁ
ଚକା ଆଖି ନୁହେଁ
ନୁହେଁ ସେ ଦାରୁ ମୂରତି
କେତେ ଅବତାରେ କେତେ ପରକାରେ
ପାଉଅଛି ପୂଜା ନିତି
ବଇଁଶୀ ଧରିଚି ମୁରୁକି ମୁରୁକି ହସିଚି
ବାଙ୍କ ଚାହାଣୀରେ ମନ ମୋହୁଅଛି
ସିଏ ଭକତଙ୍କୁ ନିଏ ଟାଣି ଲୋ
ଆଲୋ ବଉଳ ଲୋ ......(୧)
ପ୍ରିୟ ଭୋଗ ଅଟେ ତା'ର ଅମୃତକେଳି
ଥରେ ଖାଏ ଯିଏ ତାକୁ ହୁଅଇ ଭାଳି
ଭାବ ବିନୋଦିଆ ନୁହେଁ କପଟିଆ
ଅଟେ ସେ ମୁକତି ପଥ

ତା ପାଶରେ ସଦା ରଖିଥିଲେ ମନ
ଦୂର ହେବ ଅବସାଦ
ଲାଗିଗଲେ ଡୋରି ତାକୁ ହେବୁ ଝୁରି
ଭବ ସାଗରରୁ ତୁ ହୋଇବୁ ପାରି
ତୋତେ ଛୁଇଁବନି ମିଛ ମାୟା ଲୋ.....
ଆଲୋ ବଉଳ ଲୋ.......(୨)

# ଗୀତ - ୮

ରମଣୀୟ ସ୍ଥାନ ଅଟେ ରେମୁଣା
ଗୋପୀନାଥିଆର ଉଡୁଛି ବାନା....(୨ଥର)
ଆରେ ଅନା ଅନା ଅନା ହେ ସାଙ୍ଗ
ଅନା ଟିକେ ତାକୁ ଅନା
ରମଣୀୟ ସ୍ଥାନ......(୦)
ମଦନ ମୋହନ ଦକ୍ଷିଣେ ରହିଚି
ବାମରେ ଗୋବିନ୍ଦ ତା'ର
ତ୍ରୀଭଙ୍ଗୀ ଠାଣିରେ ଶୋଭା ପାଉଅଛି
ଆହା କେଡ଼େ ମନୋହର
ଅଷ୍ଟସଖୀ ତା'ର ପାଶେ ରହିଛନ୍ତି
ପୂଜା କରୁଛି ନନା....
ଅନା ତାକୁ ଟିକେ ଅନା
ରମଣୀୟ ସ୍ଥାନ ......(୧)
ବରଷକେ ଥରେ ଜାଗର ପରଠୁଁ
ମଉଛବ ହୁଏ ତା'ର
ତେର ଦିନ ଏହି ଯାତରା ପାଇଁକି
ଲାଗେ ଭକତଙ୍କ ଭିଡ଼
ଜାତି ଅଜାତିରେ ବାରଣ ନାହିଁ ତା....
କାହାକୁ କରେନି ମନା
ଅନା ଟିକେ ତାକୁ ଅନା
ରମଣୀୟ ସ୍ଥାନ........(୨)

# ଗୀତ - ୯

ମୋତେ କରିଦେ ବାସ ଚନ୍ଦନ
ନିତି ପାଇବି ତୋ ଦରଶନ
ତୋ ସେବାରେ ଲାଗୁଥିବି
ତୋ ପରଶ ପାଉଥିବି
ବିତିଯିବ ମୋ ଜୀବନ
ହେବି ମୁଁ ଧନ୍ୟ....
ମୋତେ କରିଦେ ବାସ ଚନ୍ଦନ......(୦)
ମଳୟ ଚନ୍ଦନ ଆଣି ପୁରୀରୁ
ମାଧବେନ୍ଦ୍ରପୁରୀ ନାମେ ଭକତ
ଗୋପାଳ ପାଇଁକି ନେଉଥିଲେ ସେ
ନାଶ ପାଇଁ ତାଙ୍କ ଅଙ୍ଗ ଉତ୍ତାପ
ଶରଧା ବଢ଼ିଲା ତୋର ମଳୟଜ ଚନ୍ଦନ (୨ଥର)
ରହଣି କାଳରେ ରେମୁଣା ଧାମରେ (୨ଥର)
ଦେଖି ସେ ସପନ ତୋତେ କଲେ ଲେପନ
ମୋତେ କରିଦେ ବାସ ଚନ୍ଦନ......(୧)
ଗିରିଷମ କାଳେ ତାପ ବଢ଼ିଲେ
ସହି ଯେ ନ ପାରୁ ପରା ତୁହିରେ
ବୟାଳିଶ ଦିନ ଏହି ଚନ୍ଦନ
ବୋଳାଯାଏ ତୋର ଶ୍ରୀ ଅଙ୍ଗରେ
ମହ ମହ ବାସୁଥାଏ ତୋର ଶୋଭା ବଢ଼ିଯାଏ (୨ଥର)
ଚନ୍ଦନ ବେଶ ଯେ ଭାରି ମନୋଲୋଭା (୨ଥର)
କିଣିନିଏ ମନ ଭକ୍ତ ହୁଅଇ ଧନ୍ୟ
ମୋତେ କରିଦେ ବାସ ଚନ୍ଦନ.....(୨)

# ଗୀତ - ୧୦

ମନ ଯାଆ ତୁ ଥରେ
ବୈଷ୍ଣବ ଧାମକୁ
ଦେଖି ଆସିବୁ ଗୁପ୍ତ ବୃନ୍ଦାବନକୁ.....
ପଞ୍ଚତୀର୍ଥ ଯିବୁ ରେମୁଣା ବୁଲିବୁ
ପାପ ମନ ତୋର ପବିତ୍ର କରିବୁ
ପୂଜିବୁ ଗୋପୀନାଥଙ୍କୁ.....(୦)
ମନ ଯାଆ ତୁ ଥରେ....
ମାଧବେନ୍ଦ୍ରପୁରୀମଠ ତୁ ଦେଖିବୁ
ଶୁଣିବୁ ମହିମା ତା'ର
ସପ୍ତଶରା ନଦୀ ଜଳେ ସ୍ନାନ କଲେ
ପବିତ୍ର ହେବ ଶରୀର
ସବୁ ପାପ ତୋର ହୋଇବ ଦୂର
ପାରି ହୋଇଯିବୁ ଏ ଭବ ସଂସାର (୨ଥର)
ପୂଜିଲେ ରାମଚଣ୍ଡୀଙ୍କୁ
ମନ ଯାଆ ତୁ ଥରେ......(୧)
ଗାର୍ଗେଶ୍ୱର ଦେବ ଚାହିଁ ରହିଛନ୍ତି
ସପ୍ତଶରା ନଈ କୂଳେ
ଦୀପଟିଏ ଜାଳି ଦୁଃଖ ତୋ କହିବୁ
ମହାଶିବ ରାତ୍ରୀ ବେଳେ
କେତେ ସାଧୁସନ୍ଥ ହୋଇଛନ୍ତି ଧନ୍ୟ
ମାଧବେନ୍ଦ୍ରପୁରୀ ଅଟେ ଯେ ମହାନ୍ (୨ଥର)
ଆସି ଏ ପଞ୍ଚତୀର୍ଥକୁ
ମନ ଯାଆ ତୁ ଥରେ ........(୨)

# ଗୀତ - ୧୧

ନାଇଁ ନାଇଁ ନାଇଁ ନାଇଁରେ ନାଇଁ
ଏମିତିକା ଦିଅଁ ଜଗତେ ନାଇଁ (୨ଥର)
ଗୋପୀନାଥ ନାମେ ରହି ସଭିଙ୍କର ମନ
ସିଏ ନେଇଚି ମୋହି....
ନାଇଁ ନାଇଁନାଇଁ.......(୦)
ଗୋପୀମାନଙ୍କର ନାଥ ବୋଲି ସିଏ
ନାଆଁ ତା'ର ଗୋପୀନାଥ
ରେମୁଣା ଧାମରେ ଅସ୍ଥାନ ଜମେଇ
କରୁଅଛି ପରା ନାଟ
ସଭିଙ୍କର ସିଏ ରାଜା
ପାଳୁଚି କୋଟି ପରଜା
ଜୀବନର ଦୁଃଖ ସିଏ ନେଉଚି ଭୁଲାଇ...
ରଂଗା ଅଧରେ ଚାହିଁ
ନାଇଁ ନାଇଁ ନାଇଁ...... (୧)
ବଡ଼ ଭକତ ଯେ ମାଧବେନ୍ଦ୍ରପୁରୀ
ତା ପାଇଁ କଲେ ଯେ ଚୋରୀ
କ୍ଷୀର ଭୋଗ ନେଇ ଅଞ୍ଚଳେ ରଖିଲେ
ଜଗତେ ପଡ଼ିଲା ହୁରି
ଭକତ ମନକୁ ବୁଝେ
ହଁ ଭକତି ପାଗଳ ସେ ଯେ
ଧନ୍ୟ ସେ ଭକତ ଧନ୍ୟ ଗୋପୀନାଥ....
ଏଇ ରେମୁଣା ଭୂଇଁ
ନାଇଁ ନାଇଁ ନାଇଁ ......(୨)

# ଗୀତ - ୧୨

ଜୁଇ ଜଳୁଥିବ ମଶାଣିରେ ମୋର
ମନ୍ଦିରରେ ସଂଧ୍ୟା ଦୀପ ହେଉଥିବ ତୋର
ଫେରୁଥିବେ ଗୋରୁପଲ
ମାଆ କୋଳେ ଦିବାକର
ଏତେ ଭାଗ୍ୟ ଗୋପୀନାଥ ହେବ କି ମୋହର.....
ଜୁଇ ଜଳୁଥିବ.......(୦)
ଜୀବନର ଅଭିନୟ ଖେଳ ସରିଯିବ
ଶଯ୍ୟାଶାୟୀମୋ ଶରୀର ଶବ ପାଲଟିବ
କୋକେଇରେ ବିଦା ହେବି
ଜୁଇରେ ଶେଯ ପାରିବି
ତୋର ଦେଉଳେ ବାଜିବକି ଘଣ୍ଟା ମାଦଳ....
ଜୁଇ ଜଳୁଥିବ........(୧)
ପର ହେବେ ମୋ ସଂସାର ମୋ ଭାଇ ବନ୍ଧୁ
ପାପ ପୂଣ୍ୟ ସାଥେ ଯିବି ମୁଁ ଆରପାରିକୁ
ପୂଣ୍ୟ ଠାରୁ ପାପ ବେଶୀ
ହେଲେ ମନା ନାହିଁ କିଛି
ଶେଷ ଇଚ୍ଛା ପୂର୍ଣ୍ଣ ହେବକି ମୋହର......
ଜୁଇ ଜଳୁଥିବ ..........(୨)

